# ପଦ୍ମାବତୀ ପରିଣୟ

ରଚୟିତା:—
ଶ୍ରୀ ଗଣେଶ୍ୱର ରଥ ବାଚସ୍ପତ, ବେଦାନ୍ତାଲଙ୍କାର,
ସାହିତ୍ୟୋପାଧ୍ୟାୟ, ହେଡ଼୍ ପଣ୍ଡିତ, ବ୍ରଜମୋହନ ହାଇସ୍କୁଲ୍,
କଳାହାଣ୍ଡି

ପ୍ରଥମ ସଂସ୍କରଣ
୧୯୫୮

ପ୍ରକାଶକ:—
ଓଡ଼ିଶା ପବ୍ଲିକ୍ ହାଉସ୍
ବ୍ରହ୍ମପୁର : କଟକ : ସମ୍ବଲପୁର : ଜୟପୁର

ମୂଲ୍ୟ—ଏକଟଙ୍କା ପଚିଶ ନୂଆ ପଇସା (ଟ୧. ୨୫ ନୂ. ପ.)

ପ୍ରଫେସର ଅର୍ତ୍ତବଲ୍ଲଭ ମହାନ୍ତି ଏମ୍. ଏ., ପୋଷ୍ଟ ଗ୍ରାଜୁଏଟ ପ୍ରଫେସର ଉତ୍କଳର କୁଞ୍ଜବିହାରୀ ତ୍ରିପାଠୀ ଏମ୍. ଏ., ପୁରୀ ସଂସ୍କୃତ କଲେଜର ଭୂତପୂର୍ବ ଅଧ୍ୟକ୍ଷ ରାମଚନ୍ଦ୍ର ମହାପାତ୍ର ଏମ୍. ଏ., କାବ୍ୟତୀର୍ଥ ମହୋଦୟ ମୋହର ଏହି କାବ୍ୟଟି ଦେଖି ମୋତେ ବେଶୀ ଉତ୍ସାହ ଦେଇଥିଲେ । ତେଣୁ ମୁଁ ଏହାର ମୁଦ୍ରଣରେ ପ୍ରୟାସୀ ହୋଇ ସେମାନଙ୍କୁ ଏକାନ୍ତ କୃତଜ୍ଞତା ଜ୍ଞାପନ କରୁଅଛି । ଏହି କାବ୍ୟର ପାଠରେ ଯଦି ସାହିତ୍ୟିକବୃନ୍ଦ କିଞ୍ଚିତ ଉପକୃତ ହୁଅନ୍ତି, ତେବେ ମୁଁ ପରିଶ୍ରମର ସାର୍ଥକତା ଉପଲବ୍ଧି କରି ସୁଖୀ ହେବି । ଭ୍ରମ ପ୍ରମାଦ ବଶତଃ ଯଦି ମୋର ଏହି କାବ୍ୟରେ କୌଣସି ତ୍ରୁଟି ଥାଏ, ତେବେ କେହି ଜଣାଇଲେ ମୁଁ ଭବିଷ୍ୟତରେ ତାକୁ ସଂଶୋଧନ କରି ତାଙ୍କଠାରେ ଚିର ଋଣୀ ହେବି ।

ଲେଖକ—

ଶ୍ରୀ ଗଣେଶ୍ୱର ରଥ ବାଚସ୍ପତି

# ଅଭିମତ

ଖଲ୍ଲିକୋଟ ରାଜ୍ୟାନ୍ତଃସ୍ଥିତ ଲେଙ୍ଗର ଶାସନର ଅଧିବାସୀ ଅଧୁନା କଳାହାଣ୍ଡି ବ୍ରଜମୋହନ ହାଇସ୍କୁଲର ହେଡ୍ ପଣ୍ଡିତ ଶ୍ରୀଗଣେଶ୍ବର ରଥଶର୍ମା ସାହିତ୍ୟୋପାଧ୍ୟାୟ ଇତିପୂର୍ବେ ଶମ୍ଭୁଶତକ, ଶମ୍ଭୁମହିମ୍ନସ୍ତବ, ଶ୍ରୀ ସକଳେଶ୍ବର ଶତକ, ଜହ୍ନୁବ ଚମ୍ପୂ, ଜହ୍ନୁବ ଶତକ, ଅନନ୍ତ ଶତକ, ମଣିମାଳା, ଅଙ୍ଗିରଃକଳିକା ପ୍ରଭୃତି ସଂସ୍କୃତଗ୍ରନ୍ଥ ପ୍ରଣୟନ କରି ଓ ଚଣ୍ଡୀବିଧାନ ପଦ୍ଧତି ଏବଂ ବ୍ରତବିଧାନ ପଦ୍ଧତିର ସଙ୍କଳନ ଓ ଓଡ଼ିଆ ଭାଷାରେ ଅନୁବାଦ କରି ଅସ୍ମମାନଙ୍କର ବହୁ ଉପକାର ସାଧନ କରିଅଛନ୍ତି । ବର୍ତ୍ତମାନ ସେ ତାଙ୍କର ଏହି ପଦ୍ମାବତୀ-ପରିଣୟ କାବ୍ୟରେ ଉତ୍କଳର ସୂର୍ଯ୍ୟବଂଶୀୟ ସମ୍ରାଟ ପୁରୁଷୋତ୍ତମଦେବ ଓ କାଞ୍ଚି ରାଜକନ୍ୟା ପଦ୍ମାବତୀଙ୍କର ଅନ୍ତର୍ମିଳନ ଓ ପରିଣୟ ବର୍ଣ୍ଣନା କରିଛନ୍ତି । ଏହି ଘଟନା ପ୍ରାଚୀନ ଓଡ଼ିଆକାବ୍ୟ କାଞ୍ଚୀକାବେରୀ ଓ ଆଧୁନିକ ଯୁଗର ରାମଶଙ୍କରଙ୍କ ଲିଖିତ କାଞ୍ଚୀକାବେରୀ, ପଣ୍ଡିତ ଗୋଦାବରୀଶଙ୍କ ଲିଖିତ ପୁରୁଷୋତ୍ତମଦେବ ଓ କାଳିଚନ୍ଦ୍ରଙ୍କ ଲିଖିତ 'ଅଭିଯାନ' ପ୍ରଭୃତି ନାଟକର କଥାବସ୍ତୁ ହେଲେ ସୁଦ୍ଧା ଏ ପର୍ଯ୍ୟନ୍ତ କାବ୍ୟ ଆକାରରେ କୌଣସି ଆଧୁନିକ ଓଡ଼ିଆ କବି ଏହାକୁ ଉପସ୍ଥାପିତ କରିଥିବାର ଜଣାଯାଏ ନାହିଁ । ତେଣୁ ପଣ୍ଡିତ ମହାଶୟଙ୍କର ପଦ୍ମାବତୀ-ପରିଣୟ ଏ ଦିଗରେ ଗୋଟିଏ ସାଧୁ ପ୍ରୟାସ । ଏଥିରେ ଖଣ୍ଡକାବ୍ୟର ଲକ୍ଷଣ ସୁରକ୍ଷିତ ହୋଇଅଛି । ଶବ୍ଦସାଧୁତା କଳ୍ପନାସହ ଅର୍ଥ ଗୁରୁତ୍ୱ ଥିବାରୁ କାବ୍ୟଟି ଉପଭୋଗ୍ୟ ହୋଇଅଛି । ସ୍ଥାନେ ସ୍ଥାନେ ଉପାଖ୍ୟାନଟି

ଯଥା— ଏ କାବ୍ୟର ୬ଷ୍ଠ ସର୍ଗରେ ବର୍ଣ୍ଣିତ ମାଣିକା ଗଉଡ଼ୁଣୀର ଛଦ୍ମବେଶୀ ପ୍ରଭୁ ଜଗନ୍ନାଥ ବଳଭଦ୍ରଙ୍କ ସହିତ କଥୋପକଥନ ଏବଂ ରଜା ପୁରୁଷୋତ୍ତମଙ୍କ ସହ କଥାବାର୍ତ୍ତା ବଡ଼ ହୃଦୟସ୍ପର୍ଶୀ ହୋଇଅଛି ।

ଏ କାବ୍ୟଟି ପ୍ରକାଶିତ ହେଲେ ଉତ୍କଳ କାବ୍ୟଭଣ୍ଡାରର ଶ୍ରୀବୃଦ୍ଧି ସମ୍ପାଦନ କରିବ ବୋଲି ମୋର ମତ । ଇତି ।

ତା ୧୧ । ୭ । ୫୭
ପ୍ରଫେସର ପଡ଼ା,
କଟକ ୩

(ଡକ୍ଟର) କୁଞ୍ଜବିହାରୀ ତ୍ରିପାଠୀ,
ପୋଷ୍ଟଗ୍ରାଜୁଏଟ୍ ପ୍ରଫେସର,
ରେଭେନ୍‌ସା କଲେଜ ।

ପଣ୍ଡିତ ଶ୍ରୀ ଗଣେଶ୍ୱର ରଥଙ୍କୁ ମୁଁ ଅନେକ ବର୍ଷରୁ ଜାଣେ । ସେ ଉଚ୍ଚ ଧରଣର ନୈଷ୍ଠିକ ପଣ୍ଡିତ । ତାଙ୍କର ସଂସ୍କୃତ ସାହିତ୍ୟରେ ଅନୁରାଗ ସହ ଉତ୍କଳସାହିତ୍ୟ ପ୍ରୀତି ମଧ୍ୟ ପ୍ରଶଂସନୀୟ । ପଦ୍ମାବତୀ ପରିଣୟ ଖଣ୍ଡ କାବ୍ୟଟି ଗୋଟିଏ ଉପାଦେୟ କୃତି ଏହା ଉତ୍କଳ ସାହିତ୍ୟକୁ ପୁଷ୍ଟ କରିଅଛି, ଏହା ନିଃସନ୍ଦେହ । ଏହି ଖଣ୍ଡକାବ୍ୟ ମୋ ମତରେ ମୁଦ୍ରଣର ଉପଯୋଗୀ । ଏହାର ପାଠରେ ଉତ୍କଳୀୟ ଛାତ୍ରବୃନ୍ଦ ସାହିତ୍ୟିକ ଭାଷା ଓ ସମ୍ପଦର ଅଭ୍ୟାସ ପାଇବେ, ନିଃସନ୍ଦେହ । ତେଣୁ ମୁଁ ଏ ଖଣ୍ଡକାବ୍ୟର ମୁଦ୍ରଣର ପକ୍ଷପାତୀ ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି

ତା ୧୧ । ୬ । ୫୭

# ଉତ୍ସର୍ଗ ପତ୍ର

ଯାହାଙ୍କର ଯୁକ୍ତିବଳରେ ପୂର୍ବେ ଓକିଲ ଏବଂ ବାରିଷ୍ଟରମାନେ ଭୟଭୀତ ଏବଂ ରୁଦ୍ଧକଣ୍ଠ, ଯେ ଚିଫ୍ ଜଷ୍ଟିସ୍ ସିଂହାସନ ଅଧିରୋହଣ କରନ୍ତୁ ଅମର ହାଇକୋର୍ଟ ଗୌରବାନ୍ୱିତ, ଗୁଣବତୀ ଅସେମ୍ବ୍ଲିର ସ୍ୱୟଂବରଣରେ ଯେ ଶିକ୍ଷା, ଆଇନ ଏବଂ ଘରୋଇ ବିଭାଗର ମନ୍ତ୍ରିତ୍ୱ ଭଳି ଗୁରୁଦାୟିତ୍ୱ ବହନ କରି ସୁଦ୍ଧା ସ୍ୱଦେଶର ଅଭ୍ୟୁଦୟ ପାଇଁ ନାନାଦିଗରେ ସତତ ଚେଷ୍ଟିତ, ସୌଜନ୍ୟ-ବିନୟାଢ଼୍ୟ, ନିଖିଳ ସଦ୍‌ଗୁଣାଧାର, ଉତ୍କଳର ଯୋଗ୍ୟତମ ସନ୍ତାନ ସ୍ୱନାମଧନ୍ୟ, ମାନ୍ୟବର ମନ୍ତ୍ରୀ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ବିଃ ଏଃ, ବିଃ ଏଲ, ମହୋଦୟଙ୍କର ଧର୍ମଲେଖଣୀଗୁଳକ, ପବିତ୍ରତମ କରକମଳରେ ଭକ୍ତି ଏବଂ ସମ୍ମାନର ନିଦର୍ଶନ ସ୍ୱରୂପ ମଦୀୟ 'ପଦ୍ମାବତୀ ପରିଣୟ' କାବ୍ୟଟି ଅର୍ପଣ କଲି । ଇତି ।

ଲେଖକ—

ଶ୍ରୀ ଗଣେଶ୍ୱର ରଥ ବାଚସ୍ପତି

ତର ସନ୍ନିଧରେ ନୃପଙ୍କ
କରିଥିଲେ ବସତି;
ଭୁଜ ଦୃଢ଼ ବାଡ଼େ ରକ୍ଷିତା
ତେଣୁ ନଥିଲା ଭ୍ରାନ୍ତି ।
"ନୃହନ୍ତି କମଳା ଚପଳା
ଲୋକ ଦୁର୍ଗୁଣ ତାଙ୍କ,
କରେ ସ୍ଥାନାନ୍ତର" ବୁଝାଇ
ଦେଲା ଏହା ସଭିଙ୍କୁ ।
ନୃପ ଦ୍ୱେଷାନଳ ବ୍ୟକ୍ତ
ଥିଲେ ଦାୟାଦଗଣ,
ବନ୍ଧି ବନ୍ଧୁ ବାନ୍ଧ୍ୟା ତାହାଙ୍କୁ
ଉଡ଼ାଇଲା ତକ୍ଷଣ ।
ସେହି କୋପ ଶ୍ୱାସ ବିକାଶି
ବଳ ପ୍ରବଳ ତର,
ଅନାୟାସେ କଲା ଭଗନ
ଭ୍ରାତୃଗଣଙ୍କ ମେଳ ।
କାଏ କେଉଁଠାରେ ନିକ୍ଷିପ୍ତ
ହେଲେ ଧରା ବକ୍ଷରେ,
ଅଦ୍ୟାପି ତାଙ୍କର ତନୟେ
ବିରାଜନ୍ତି ଦେଶରେ ।
ଶ୍ରୀ ଜଗନ୍ନାଥଙ୍କ କୃପାରୁ
ବୀର ନୃପ ତିଳକ,
ଉଡ଼ାଇଲେ ଯଶଃ ପତାକା
ରଙ୍ଗି ଆପଣା ଟେକ ।

ଯଶୋରଶ୍ମି ତାଙ୍କ ବିମଳ
କରିଥିଲା ଉତ୍କଳ,
ଉତ୍କଳରୁ ବ୍ୟାପି ପୂରିଲ
ଦେଇଥିଲା ଭୂତଳ ।
କୀର୍ତ୍ତିଲତା ଜନ୍ମ ବଣରେ
ବ୍ୟାପିଗଲା ସର୍ବତ୍ର,
ଦାନ ଦାକ୍ଷିଣ୍ୟାଦି ଗୁଣରେ
ହୋଇ ଅତି ପବିତ୍ର ।
ଶୁଭ୍ର ସୁଲକ୍ଷଣ ବଦନ
ଦିଶେ ଅତି ମଞ୍ଜୁଳ,
ଶାରଦ ପୂର୍ଣ୍ଣିମା ଚନ୍ଦ୍ର କି
ନିଷ୍କଳଙ୍କ ମଣ୍ଡଳ ।
ଶରତ ପୂର୍ଣ୍ଣିମା ସୁଧାଂଶୁ
ହେଲେ ଶଶ ବିହୀନ,
ଲଭିବ ଏ ମୁଖ ସାଦୃଶ
ଏହା ବିଚାରେ ମନ ।
ଏ ହାସ ସୁଧାଂଶୁ ମଣ୍ଡଳ
ମଧ୍ୟସ୍ଥିତ ପୀୟୁଷ,
ଏ ମୁଖ ଚନ୍ଦ୍ରମା ଅଟଇ
ଏହା କରେ ପ୍ରକାଶ ।
ନିଜ ସଖା କାମ ପାଇଁକି
ନାସା ତିଳ କୁସୁମ,
ରଖିଅଛୁ ମୁଖ ଚନ୍ଦ୍ରମା
ହୋଇ ହରଷ ମନ ।

ଏ ସୁନ୍ଦର କର୍ଣ୍ଣ ଯୁଗଳ
ପାଶ ଯୁଗ୍ମ ନିକର,
ଚକ୍ଷୁ ମୀନ ଗତି ରୋଧନେ
ଧାତା ବଖିଛନ୍ତି ସ୍ଥିର ।
କୁଞ୍ଚିତ କେଶରେ ଶୋଭିତ
ଶିର କି ମନୋହର,
କୋଟି ଚନ୍ଦ୍ର ଶଶ ଲଞ୍ଛନ
କିବା ହୋଇଛନ୍ତି ଠୁଳ ।
କଣ୍ଠଧ୍ୱନି ତାଙ୍କ ଗମ୍ଭୀର
କର୍ଣ୍ଣପ୍ରିୟ ମଧୁର,
କାମ କୈନ ଶଙ୍ଖଧ୍ୱନିକି
କରୁଅଛି ଧିକ୍କାର ।
ଅକର୍ଣ୍ଣ ବିସ୍ତୃତ ଚଞ୍ଚଳ
ନେତ୍ର ଯୁଗ୍ମ ସୁନ୍ଦର,
ମୀନଧ୍ୱଜ ରଥେ ନିବଦ୍ଧ
ଯଥା ଧ୍ୱଜ ଯୁଗଳ ।
କୁଟିଳ ଭ୍ରୂଲତା ମଣ୍ଡଳ
ଦିଶେ କେଡ଼େ ମଞ୍ଜୁଳ,
ଅରବିନ୍ଦେ କିବା ପତିତ
କାମ ଧନୁ ଯୁଗଳ ।
ପ୍ରସାରିତ ଅତି ଦୁର୍ଦ୍ଧର୍ଷ
ବକ୍ଷଃସ୍ଥଳ କଠିନ,
ଦିଶୁଅଛି ଅତି ସୁନ୍ଦର
ଯଥା କାମ ତୋରଣ ।

ଆଜାନୁ ଲମ୍ବିତ କର୍କଶ
ତାଙ୍କ ଭୁଜ ଯୁଗଳ,
କର କରଯୁଗ ଶୋଭନ୍ତୁ
ହୋଇଅଛୁ ମଞ୍ଜୁଳ ।
ହୋଇଥିଲା ପଦ ଯୁଗଳ
ଅତି ମଞ୍ଜୁଳତମ,
ସଦ୍ୟୋବିକଶିତ ଚଞ୍ଚଳ
ସ୍ଥଳ କମଳ ସମ ।
କ୍ଷୀଣ କଟି ତଟ ତାଙ୍କର
ହୋଇବାରୁ ମଞ୍ଜୁଳ,
ସିଂହର ସାଦୃଶ ତହିଁରେ
ଥିଲା କରଣ ଧର ।
ଅପରୂପ ରୂପ ମାଧୁରୀ
ଦେଖି ଲଳନାଗଣ,
ପଞ୍ଚ ବାଣାଘାତେ ମରମ
କରଇଲେ ବେଦନ ।
ତାହାଙ୍କ ଲାବଣ୍ୟ ଜଳକୁ
ରମା ମାନସ ମୀନ,
କରଥିଲା ଏକ ମାତର
ଧବା ରଙ୍ଗଣୀ ସ୍ଥାନ ।
ଏକମାତ୍ର ତାଙ୍କ ସ୍ୱରୂପ
ରମା ଲୋଚନେ ଥିଲା,
ସେହେତୁ ଜଗତ ତାହାଙ୍କୁ
ସେହି ରୂପ ଦର୍ଶିଲା ।

ସ୍ୱପ୍ନେ, ଜାଗରଣେ, ଶୟନେ
ତାଙ୍କ ରୂପ ମାଧୁରୀ,
ଝୁରି ଝୁରି ତାଙ୍କ ସଙ୍ଗତେ
ସ୍ୱପ୍ନେ ରଚିଲେ କେଳି ।
ଜାଗରଣେ ସେହି ଭାବରେ
ହୋଇବାରୁ ବିଭୋର,
ଧରି ତାଙ୍କ କର ଆନନ୍ଦେ
କଲେ ସୁଖ ବିହାର ।
କୋମଳ ଶୟନେ ତାହାଙ୍କ
ସଙ୍ଗେ ସୁଖ ଶୟନ,
କଲେ ରମାଗଣ ଅତ୍ୟନ୍ତ
ହୋଇ ହରଷ ମନ ।
"କାଞ୍ଚି ନୃପ କୁଳ ତିଳକ
ପଦ୍ମାବତୀ ନନ୍ଦିନୀ,
ରୂପେ, ଗୁଣେ ସତୀ ସାବିତ୍ରୀ
ରମା କିବା ଭବାନୀ ।
ସୁକେଶୀ ରମ୍ଭୋରୁ ବିମ୍ବୋଷ୍ଠୀ
ଶୁଭ୍ର ଚନ୍ଦ୍ରବଦନା,
ସିଂହକଟି ଗଜଗମନା
ପଦ୍ମ-ପତ୍ର ଲୋଚନା ।
ପଙ୍କଜ ଚରଣ ରକ୍ତ
ତଳ ଗୁଳ୍ଫ ବିହୀନ,
ବୀଣା ଜିଣା ସ୍ୱର ସନ୍ତତ
ହସ ହସ ବଦନ !

ଶ୍ୱାସ ଲେଲ ହୋଇ ଭ୍ରମର
କୁଳ ଯାକୁ ବ୍ୟାକୁଳ,
କରନ୍ତି ସେ ବିଧି ସୃଷ୍ଟିରେ
ନୃପେ ସମ କେବଳ ।"
ଦଇବ ବଶରୁ ଏକଥା
ଶୁଣି ଲୋକ ମୁଖରୁ,
ଦେଇଥିଲେ ନୃପ ହୃଦୟେ
ତାଙ୍କୁ ସ୍ଥାନ ସୁଗୃହୁ ।
ପଦ୍ମାବତୀ ଅତି ଦୂରରେ
ଥିଲେ ସୁଦ୍ଧା ତାଙ୍କର,
ମନ ଯାଇ ତାଙ୍କ ସଙ୍ଗରେ
କଲ୍ପ ସୁଖ ବିହାର ।
ଅନ୍ତରାୟ ନୁହେଁ ଦୂରତା
କେବେ ମାନସ ପାଇଁ,
ଶନ୍ତେ ଅଳି ବନ ମଧ୍ୟରୁ
ସରେ ପଦ୍ମିନୀ ରାଣୀ ।
ମଣିକାଞ୍ଚନର ସଂଯୋଗ
ଲଗି ବିଧାତା ମନ,
ଜଗ୍ରତ ସର୍ବଦା ତେଣୁ ସେ
କରେ ତହିଁ ଯତନ ।
ବିଧାତା ବିଧାନ କମତେ
ସବୁ ହୁଅଇ ଠୁଳ,
କେହୁ ଜାଣେ ନାମ ମାତର
ତହିଁ ହୁଅଇ ମୂଳ ।

ଏବେ ତାଙ୍କୁଦେଖୁ ଅଗତା
ଯାଦୁକଣ୍ଟ ରମଣୀ,
ପଦ୍ମାବତୀ ଶଙ୍କ ନୃପଙ୍କୁ
ଦେଲ ଗୋପନେ ଅଣି ।
ନୃପ ସେହ ରୂପ ମାଧୁର୍ଯ୍ୟ
ଅସ୍ୱାଦନେ ବଧୂର,
ହୋଇଗଲେ ତାଙ୍କ ଲୋଚନ
ତହିଁ ରହିଲ ସ୍ଥିର ।
ପୁନଃ ପୁନଃ ସେହ ରୂପର
ଅଙ୍ଗ ପ୍ରତ୍ୟଙ୍ଗ ଶୋଭା,
ଯେତେ ଦେଖିଲେହେଁ ନୟନ
ତହିଁ ହୋଇଲ ଲୋଭା ।
ସେହ ସଉନ୍ଦର୍ଯ୍ୟ ମାନସ
ସରୋବର ଜଳରେ,
ବୁଡ଼ିଗଲ ନୃପ ମାନସ
ହଂସ ପ୍ରମୋଦ ଭରେ ।
ଦେଖିବା ମାତ୍ରକେ ସେ ମୁଖ
ସରସିଜ ଅନ୍ତରେ,
ପଶିଗଲ ନୃପ ମାନସ
ଅଳି ତହିଁ ଅଦରେ ।
ସେହ ମୁଖ ଚନ୍ଦ୍ର ଚନ୍ଦ୍ରିକା
ଅସ୍ୱାଦନେ ସରାଗ,
ହୋଇଗଲ ନରବରଙ୍କ
ନେତ୍ର ଚକୋର ଯୁଗ ।

ସେ ନେତ୍ର ଯୁଗଳ ସହିତ
ନୃପ ନୟନ ମୀନ,
ମିଳି ପ୍ରୀତ ହେଲା ସ୍ୱକାନ୍ତ
କରେ ମୋଦ ବର୍ଦ୍ଧନ ।
ସେ କର୍ଣ୍ଣ ପାଶରେ ନିବଦ୍ଧ
ହୋଇ ନୃପ ମାନସ,
ସ୍ଥିର ହୋଇଥିଲା ବରଜି
ନିଜ ଚାଞ୍ଚଲ୍ୟ ଦୋଷ ।
ସେ ନାସିକା ତଳ କୁସୁମ
ରସ ନୃପ ମାନସ,
ଭୃଙ୍ଗ ପାନ କରି ବହିଲା
ତହିଁ ସୁଖ ନିବାସ ।
ମେଘାଚ୍ଛନ୍ନ ସ୍ୱର୍ଣ୍ଣ ଶିଖର
ଶୃଙ୍ଗ ଯୁଗଳ ସମ,
କୁଚୂଳ ଅବୃତ ଉରଜ
ଯୁଗ ହରିଲା ମନ ।
ତାଙ୍କ କଟି ସିଂହ କଟିକି
ଜିଣି ଥିବାରୁ ତା'ର,
ତୁଳନା ପାଇଁକି ଦରିଦ୍ର
ହୋଇ ଗଲା ସଂସାର ।
ସେହି ହସ୍ତପଦ ତୁଳନା
ନ ପାଇଣ କମଳ,
ମନେହୁଏ ଆଶା କରୁଛି
ଯାଇ ପଙ୍କିଳ ଜଳ ।

ପଙ୍କରୁ ଜନମ ହେଉଥିବୁ
ନାମ ତା'ର ପଙ୍କଜ,
ସଙ୍ଗଦୋଷା ପଦ ସହିତେ
ତାକୁ ଭୁଲିବା ଲାଜ ।
ନୃପଙ୍କୁ ସ୍ୱରୂପ ସର୍ବସ୍ୱ-
ଶ୍ରେଷ୍ଠର ରତ୍ନ ଲମ୍ପଟ,
ଦେଖି କାମବାଣ ମାରିଲା
ହୋଇ ଅତ୍ୟନ୍ତ ରୁଷ୍ଟ ।
ସେ ବାଣ ଅଘାତେ ତାହାଙ୍କ
ମୁଖ ହୋଇଲା ମଳିନ,
ଘନ ଘନ ଶ୍ୱାସ ବହିଲା
ହେଲା ଉଦ୍ଭ୍ରାନ୍ତ ମନ ।
କେବଳ ସେ ରୂପ ମାନସ
ପଟେ ସଦା ତାଙ୍କର,
ଅଙ୍କିତ ରହିଲା ସେ ଯେଣୁ
ନୃପ ହେଲେ ଅସ୍ଥିର ।
ଯହୁଁ ଦେଖିଲେ ସେ ଅପୂର୍ବ-
ତର ରୂପ ମାଧୁର୍ଯ୍ୟ,
କାମବାଣେ ତାଙ୍କ ମାନସ
ହେଲା ସନ୍ତପ୍ତ ଧାର୍ଯ୍ୟ ।
କପୋଳ ହୋଇଲା ପାଣ୍ଡୁର
ବର୍ଣ୍ଣ ମୁଖ ବହାର,
କିପ ସମ ବୀଣା ଝଙ୍କାର
କର୍ଣ୍ଣ କଣ୍ଠ ତାଙ୍କର ।

ପଦ୍ମାବତୀ ବନ୍ଧୁ ହୃଦରେ
ଥିଲେ ସୁଜ୍ଞା ତାଙ୍କର,
ଗୁଣ ଗଣ ହୃଦେ ରଖିଲେ
ଙ୍କର ରଞ୍ଜନ ହାର ।
ସେ ରୂପ ଚନ୍ଦନ ସେ ଗନ୍ଧ
ପଟ୍ଟ ଦର୍ଶନ ଭିନ୍ନ,
ଅନ୍ୟ କାର୍ଯ୍ୟେ ମନ ନ ଗଲା
ସଦା ହେଲେ ମଗନ !

---

## — ପ୍ରଥମ ସର୍ଗ —

ପଦ୍ମବତୀ ନିଜ ଗୃହରେ
ଥାଇ ନୃମଣି ଗୁଣ
ଶୁଣି ଦେଇଥିଲେ ତାହାଙ୍କୁ
ହୃଦେ ପରମ ସ୍ଥାନ ।
ଜାଗ୍ରତ ହୁଅଇ ପୀରତି
ଭାବ-ବନ୍ଧୁଙ୍କ ଠାରେ,
ବିଧିର ଅବାଧ୍ୟ ବିଧାନ
କେହୁ ଏଡ଼ି ନ ପାରେ ।

କରୁଥିଲେ ତାଙ୍କ ସର୍ବଦା
ମନେ ମନେ ଅର୍ଚ୍ଚନା,
ହ୍ରଦେ ଥାଇ ଯଥା ପଦ୍ମିନୀ
କରେ ସୂର୍ଯ୍ୟ ବନ୍ଦନା ।
କୁମୁଦନୀ ବହୁ ଦୂରରେ
ଥିଲେ ସୁଦ୍ଧା ଚନ୍ଦ୍ରମା,
କିରଣେ ଲଭଇ ଆନନ୍ଦ
ତାର ନ ଥାଏ ସୀମା ।
ଗୁଣ ଖୋଜେ ଗୁଣ ଗରିମା
ତହିଁ କେବଳ ତାର,
ଅପାର ଆନନ୍ଦ ଆସଇ
ଜାଣିଅଛୁ ସଂସାର ।
ବୃହସ୍ପତା ଯୌବନ ପ୍ରବେଶ
ଜାଣି କାଶ୍ମୀରାଜନ,
ବର ଅନ୍ୱେଷଣେ ନିଯୋଜି
ଥିଲେ ସନ୍ତତ ମନ ।
ଦିନେ ସାୟଂକାଳେ ମହର୍ଷି
ପୁତ୍ରୀ ବୃହସ୍ପତା ଭୁଲେ,
ବସିଥିଲେ ନିଜ ପ୍ରାସାଦେ
ଜଣେ ବନ୍ଧୁ ସଙ୍ଗରେ ।
ବହୁକାଳ ତାଙ୍କ ସେ ବନ୍ଧୁ
ପରିବ୍ରାଜକ ଥିଲେ,
କଥା ପ୍ରସଙ୍ଗରେ ଉତ୍କଳ-
ପତିଗୁଣ କହିଲେ ।

ତାହାଙ୍କ ମୁଖରୁ ପୁରୁଷୋ-
ତ୍ତମ ଲାବଣ୍ୟ ମୂର୍ତ୍ତି,
ଦେବ ଦ୍ୱିଜ ଗୁରୁ ଭକତି
ଯଶ କୀର୍ତ୍ତି ମୁଖ୍ୟାଦି ।
ଦାନ ଦାକ୍ଷିଣ୍ୟାଦି ସଦ୍‌ଗୁଣ-
ବଳୀ କୁଳ ପ୍ରଶସ୍ତି,
ଶୁଣି କନ୍ୟାଦାନେ ତାହାଙ୍କୁ
ଥିଲେ ବଳାଇ ମତି ।
ପଦ୍ମାବତୀ ସେହି ସ୍ଥାନରେ
ଥିଲେ ମାତା ପାଖରେ,
ନୃପତି ଚରିତେ ବିମୁଗ୍ଧା
ହେଲେ ନିଜ ଅନ୍ତରେ ।
ସେହି ଗୁଣ ଶ୍ରୁତି କ୍ଷଣରୁ
ଗୁଣବତୀ ମାନସ-
ଅଳି ତାଙ୍କ ପଦ କମଳେ
କଲା ସତତ ବାସ ।
ସେହି ମୁହୂର୍ତ୍ତରୁ ସୁମନ
ବାଣ ପଞ୍ଚସାୟକ,
ଅଘାତରେ ଚୂର୍ଣ୍ଣ ହୋଇଲା
ତାଙ୍କ ଧୈର୍ଯ୍ୟ ବିବେକ ।
ଉତ୍ତପ୍ତ ହୋଇଲା ଶରୀର
ମୁଖ ହେଲା ବିବର୍ଣ୍ଣ,
ଘନ ଘନ ଶ୍ୱାସ ବହିଲା
ହେଲା ଉଚ୍ଛନ୍ନ ମନ ।

ତଲ୍ପ ବୋଧ ହେଲା ଅହାର
ପୁଣି ସୁଖ ବିହାର,
ସୁକୋମଳ ଶଯ୍ୟା କଣ୍ଟକ-
ମୟ ହେଲା ତାଙ୍କର ।
ନିଦ୍ରାଦେବୀ ତାଙ୍କ ନୟନ
ଯୁଗଳକୁ ପରଣ,
ନ କରନ୍ତେ କ୍ରମେ ଶରୀର
ହୋଇଗଲା ବିବର୍ଣ ।
ଶ୍ରୁତି ଅନୁରୂପ କଳ୍ପନା
କରି ନୃପ ଅକୃତି,
ଦେଖୁଥିଲେ ନିଜ ଆଗରେ
କିବା ଦିନ କି ରାତି ।
ରାତ୍ରି ଶେଷେ ଅଳ୍ପ ମୁଦ୍ରିତ
ହୋଇ ଗଲେ ନୟନ,
କରୁଥିଲେ ତାଙ୍କ ସେ ରୂପ
ସ୍ୱପନରେ ଦର୍ଶନ ।
ନାଥ, ନାଥ ବୋଲି ସମ୍ବୋଧି
କରି କହେ ବେଦନ,
କରୁଥିଲେ ମିଛ ମିଛରେ
ତାଙ୍କ କଣ୍ଠାଲିଙ୍ଗନ ।
ଭଗ୍ନ ନିଦ୍ରା ହୋଇ ଚମକି
ବସି ଶେଯ ଉପରେ,
ଚଞ୍ଚଳ ନୟନ ପକାଉ
ଥିଲେ ଗୃହ ଅନ୍ତରେ ।

ଚୋକ୍କଳର ଭାନ ପଞ୍ଚମ
ପଡ଼ି ଗଲେ କାନରେ,
ଶାକ୍ଷଣର ପଣ୍ଡ ତାହାଙ୍କୁ
ବାଧୁଥିଲା ସେ କାଳେ ।
ଶୁକ ଶାରୀଙ୍କ ଭାଷଣ
ହେଲେ କର୍ଣ୍ଣେ ପତିତ,
କୁହୁ କୁହୁ ଦଂଶନ ପରାୟେ
ହେଉ ଥିଲେ ବ୍ୟଥିତ ।
ଜଳାଇଲା ତାପ ଚନ୍ଦନ
ଲେପ ତାଙ୍କ ଶରୀରେ,
ତୁଷାନଳ ସମ ଯେଣୁ ସେ
ଜଳୁଥିଲେ ଭିତରେ ।
ପୂର୍ଣ୍ଣା ପୂର୍ଣ୍ଣ ଅଧରେ
ପୂର୍ଣ୍ଣ ଅକ୍ଷର ସ୍ଫୁର୍ତ୍ତି,
ତାହାଙ୍କ ମନରେ ଚମକ
ଆଣୁ ଥିଲା ଝଟିତି ।
ଅସିଯିବ ପର ଟିକଏ
ଶାନ୍ତି ଭାବ ମନରେ,
ସଖୀଗଣ ତାଙ୍କୁ ଶୁଆଇ
ଥିଲେ ଫୁଲଶେଯରେ ।
ସୁଖ ତାଙ୍କୁ ଯାହା ପୂର୍ବେ
ହେଉଥିଲା ପ୍ରତୀତ,
ଦୁଃଖ ତାପ ତହୁଁ ସେ ଏବେ
ଭୋଗି ହୋଇଲେ ଭୀତ ।

କହୁଲେ ମଳୟ ମାରୁତ
ତୁମ୍ଭେ ଜଗତ ପ୍ରାଣ,
ହୋଇ ଝଞ୍ଜା ଏବେ କରୁଛ
ମୋର ପ୍ରାଣ ହରଣ ।
ଶୀତଳତା ମାନ୍ଦ୍ୟ ସୌରଭ
ତୁମ୍ଭ ସହଜ ଗୁଣ,
ସଖା ଅଗ୍ନିଠାରୁ କଲ କି
ଏହି ତାପ ଗ୍ରହଣ ।
ଅବା କାଳସର୍ପ ଗରଳୁଁ
କର ବିଷ ହରଣ,
ଆଣିଅଛୁ ଦୁଷ୍ଟ କରିବୁ
ବୋଲି ସୃଷ୍ଟି ମାରଣ ।
ପବନାଶନଙ୍କ ଜଠରା-
ନଳ ତାପୁ ବରତ,
ଆସିଅଛୁ ସତ୍ୟ ତୁ ମହା-
ଭୂତ କହୁଛନ୍ତି ଶ୍ରେତ ।
ମାତୃଗର୍ଭେ ପଶି ମଘବା
ଅଣଚାଶ ଖଣ୍ଡରେ,
ତୋତେ କାଟିଥିଲେ ନ ମଲୁ
ତାଙ୍କ ବଜ୍ର ଅସ୍ତ୍ରରେ ।
ହେ କୁସୁମଗଣ କିପାଇଁ
କର ମୋତେ ଭେଦନ,
ନୁହେ ନୁହେ ଏହା କଦାପି
ତୁମ୍ଭଠାରେ ଶୋଭନ ।

ଅରେ ପଦ୍ମ ତୋର ଜନନୀ
ଅଟେ ପଙ୍କ ପଦ୍ମିନୀ,
ମାତୃବଧ ମହାପାତକ
କରୁ କାହିଁକି ଜାଣି ।
ମୋ ନେତ୍ର ଯୁଗଳ ସାଦୃଶ୍ୟ
ପାଇଅଛୁ ତୋ ପତ୍ର,
ମୋତେ ହତ୍ୟାକଲେ ତୁ ନିନ୍ଦ୍ୟ
ହୋଇ ଯିବୁ ସର୍ବତ୍ର ।
ମୋ ବଦନ ସଙ୍ଗେ ହେ କୁନ୍ଦ
ଲଭିଅଛ ତୁଳନା,
କାହିଁପାଇଁ ମୋତେ ଦେଉଛ
ଏରୂପର ଯାତନା ।
ହେ ଚମ୍ପକ ମୋର ବରଣେ
ତୁମ୍ଭେ ସମ୍ମାନ ପାଅ,
ପୁଣି ମୋତେ ଦୁଃଖ ଯାତନା
ଏତେ କିପାଇଁ ଦିଅ ।
ହେ ଅଶୋକ ମୋତେ ଶୋକରେ
ପକାଇଲେ ଆପଣ,
କଣ୍ଟାପ୍ରିଅ ନାମ ନୋହିବ
କିମ୍ପା ପଦ୍ମଲୋଚନ ।
ଭ୍ରମର ବ୍ୟାକୁଳ ନ କର
ଯେନ ଶରୀର ମୋର,
ମୋ ମୁଖ ସୁରଭି କମଳ
ପରି ଭ୍ରମିବ ଘର ।

ହେ ଚନ୍ଦ୍ର ମୋ ମୁଖ ସାଦୃଶ୍ୟ
ପାଇଛୁ ତୋ ମଣ୍ଡଳ.
ତଥାପି ତୁ ଦୁଷ୍ଟ ଏପର
କରୁ ମୋତେ ବ୍ୟାକୁଳ ।
ମୋ ବଚନ ଶେଷ ହୋଇଲେ
ତାହା କଥା ସଙ୍ଗତେ,
ତୁଳିତ ହୋଇବ ତୋ ସୁଧା
କହ ଦୁର୍ବୁଦ୍ଧି ମୋତେ ।
ହେ ବିଧାତା ତୁମ୍ଭ ସନ୍ତାନ
ଅଟେ ଏହି ସଂସାର,
କେଉଁ ଅପରାଧୁଁ କରୁଛ
ମୋତେ ଏ କଲବଲ ।
ସନ୍ତାନର ଦୁଃଖ ଦେଖିଲେ
ପିତା ହୁଅନ୍ତି ବ୍ୟସ୍ତ,
କିପର ମୋ ଦୁଃଖେ ଅପଣ
ନ ହୁଅନ୍ତି ଦୁଃଖିତ ।
ପୁରୁଷ ଉତ୍ତମ ମହିଷୀ
ନାମ ତୋର ଜନନୀ,
ମାତୃବଧ ପାପ କିପର
କରୁ ତୁ ଜାଣି ଜାଣି ।
ଶ୍ରୀ ଜଗନ୍ନାଥଙ୍କ ସେବକ
ସେବକାକୁ ବିନାଶ,
କଲେ କେବେ ହେବ ତୋହର
କେଉଁ କୀରତି ଯଶ ।

ଏହୁପରି କରି ଭାବନା
ନୃପ ଭବେ ଶ୍ରୀମତୀ,
କଟାଇଲେ କାଳ କେବଳ
କିବା ଦିନ କି ରାତି ।

---

## ଦ୍ୱିତୀୟ ସର୍ଗ

ନୃପ ବିଚାରିଲେ ପ୍ରଥମେ
ଜାମାତାଙ୍କୁ ଦେଖିବି,
ପରେ କନ୍ୟାରତ୍ନ ବିଧିରେ
ତାଙ୍କ କରେ ଅର୍ପିବି ।
ଶ୍ରୀ ଜଗନ୍ନାଥଙ୍କ ଦର୍ଶନ
ବ୍ୟାଜେ ପୁରୀ ଗମନ,
କଲେ ନରମଣି ତହୁଁଣେ
ମନ୍ତ୍ରୀ ସାମନ୍ତଗଣ ।
ଚତୁର୍ଦ୍ଦଶୀ ଜ୍ୟୋ ଯୋଗରେ
ଜ୍ୟେଷ୍ଠ ଶୁକ୍ଳ ପକ୍ଷରେ,
ଦେବ ଦରଶନେ ଗମିଲେ
ପାତ୍ର ମନ୍ତ୍ରୀ ସଙ୍ଗରେ ।
ଗାଣପତ୍ୟ ଥିଲେ ସେ ଯେଣୁ
ଗଣପତି ସ୍ୱରୂପ,
ନ ଦେଖି ପ୍ରଭୁଙ୍କ ମନରେ
ଜନମାଇ ସନ୍ତାପ ।

ଏହୁପର କର ଭାବନା
ନୃପ ଭାବେ ଶ୍ରୀମନ୍ତ,
କଟାଇଲେ କାଳ କେବଳ
କବା ଦନ କା ରାତ ।

---

## ଦ୍ୱିତୀୟ ସର୍ଗ

ନୃପ ବର୍ତ୍ତିଲେ ପ୍ରଥମେ
ଜାମାତାଙ୍କୁ ଦେଖିବ,
ପରେ କନ୍ୟାରନ୍ ବାଧିରେ
ତାଙ୍କ କରେ ଅର୍ପିବ ।
ଶ୍ରୀ ଜଗନ୍ନାଥଙ୍କ ଦର୍ଶନ
ବ୍ୟାଜେ ପୁରୀ ଗମନ,
କଲେ ନରମଣି ଗହଣେ
ମନ୍ତ୍ରୀ ସାମନ୍ତଗଣ ।
ଚତୁର୍ଦ୍ଦଶୀ ଶଶା ଯୋଗରେ
ଜ୍ୟେଷ୍ଠ ଶୁକ୍ଳ ପକ୍ଷରେ,
ଦେବ ଦରଶନେ ଗମିଲେ
ପାତ୍ର ମନ୍ତ୍ରୀ ସଙ୍ଗରେ ।
ଗାଣପତ୍ୟ ଥିଲେ ସେ ଯେଣୁ
ଗଣପତି ସ୍ୱରୂପ,
ନ ଦେଖି ପ୍ରଭୁଙ୍କ ମନରେ
ଜନମାଇ ସନ୍ତାପ ।

ହଜାର ପଣ୍ଡାଙ୍କୁ ବୋଇଲେ
ଗଜପତି ଚରଣି,
ଯୁଗଳ ଛଡ଼ା ମୁଁ ତାହାକୁ
କରେ ନାହିଁ ପ୍ରମାଣ ।
ତାହାଙ୍କ ପ୍ରସାଦ ବ୍ୟତୀତ
ଅନ୍ୟ ପ୍ରସାଦେ ମୋର,
କଦାପି ନ ଅଟେ ତୃପତି
ସତ୍ୟ ସତ୍ୟ ଏ ଗିର ।
ଦେଖିବଇଁ ଯଦ ପ୍ରଭୁଙ୍କ
ଗଜପତି ମୂରତି,
ପ୍ରଣମି ପ୍ରସାଦ ସେବନ
କରିବଇଁ ଝଟତି ।
ହରଷେ ନୃପତି ଗମନ୍ତେ
ନିଜ ବସା ଭବନ,
ବଡ଼ ଦେଉଳରେ ଚହଲ
ପଡ଼ିଗଲା ଗହନ ।
ପୂଜାପଣ୍ଡା ମହା ସୁଆର
ଅଇ ପ୍ରଭୁ ଚରଣେ,
କୃତାଞ୍ଜଳି ପୁଟେ ଜଣାଣ
କଲେ ହରସ ମନେ ।
ହେ ଦେବ ମଗଧ କଳିଙ୍ଗ
ଅଙ୍ଗ ବଙ୍ଗ ଜଙ୍ଗଲ,
ସୌରାଷ୍ଟ୍ର ଦ୍ରାବଡ଼ ଆଦରେ
ଯେତେକେ ଭୂପବର ।

କ୍ଷତ୍ର, ବୈଶ୍ୟ, ଶୂଦ୍ର ସମସ୍ତେ
ନବାଂଧରେ ଶ୍ରୀପଦେ,
ପ୍ରଣମି ପ୍ରସାଦ ସେବନ
କରୁଛନ୍ତି ଆନନ୍ଦେ ।
ପରିବାଦ ନବାବଙ୍କର
ଏବେ ନ ହେଉ ନାଥ,
ବିଚାର କରମା ଆପଣ
କେବେ ହେଉ ପ୍ରଥିତ ।
କୁକୁର ମୁଖରୁ ପତିତ
ହେଲେ ସୁଦ୍ଧା ଯାହାକୁ,
ଭକ୍ତିଭରେ ହିନ୍ଦୁ ସେବନ
କରୁଅଛନ୍ତି ତାକୁ ।
ଭକ୍ତ ଗଉରବରେ ନୃପତି
ତ୍ୟାଗି ଶ୍ରୀପଦେ ଦ୍ରୋହ,
କଲ ତା ଗରବ ଖଣ୍ଡନ
ହେଉ ତୁଚ୍ଛ ବ୍ୟାମୋହ ।
ଏ ସମସ୍ତେ ପ୍ରଭୁ ମନ୍ତ୍ରୀଙ୍କୁ
ଖେଦି ଆସିଲ ଗନ୍ଧ,
ସଭିଙ୍କ ବଦନେ ଆନନ୍ଦ
ଛଟା ପାଇଲ ଶୋଭା ।
ଦାଶରଥି ମହା ସୁଅର
ରାତି ଶେଷ ପ୍ରହରେ,
ଦେଖିଲେ ସ୍ୱପନେ ସନ୍ନ୍ୟାସୀ
ଅସି କୋପ ମୁଖରେ ।

ଭାଷିଲେ, "ମୋ ସ୍ନାନ ମଣ୍ଡପେ
ଡାକ ଅଣ ରଜାଙ୍କୁ,"
ପ୍ରଭାତୁଁ ଉଠି ସେ ବୃତ୍ତାନ୍ତ
ଜଣାଇଲେ ସଭାକୁ ।
ସେ ସମ୍ବାଦ ପାଇ ବିଖ୍ୟାତ
କୀର୍ତ୍ତି ଜଙ୍ଗଲପତି,
ଛତିଶ ନିଯୋଗ ସହିତେ
ଦରଶନେ ଶ୍ରୀପତି ।
ଗଜଦନ୍ତ ଗଢ଼ା ପାଲିଙ୍କି
ସ୍ୱର୍ଣ୍ଣଦଣ୍ଡ ମଣ୍ଡିତ,
ଅଶ୍ୱେଢ଼ ଗମିଲେ ସଙ୍ଗରେ
ଥିଲେ ମନ୍ତ୍ରୀ ପଣ୍ଡିତ ।
ରାଜଛତ୍ର ଶିରେ ବିରାଜେ
ଦୁଇ ପାଖେ ଚାମର,
ଅଗ୍ରେ ଛଡ଼ ବାଡ଼ ଫୁଟକେ
ହୋଇ ଅତି ମଞ୍ଜୁଳ ।
ମଣିମା ମଣିମା ଡାକରେ
ପୂରି ଯାଉଛି କ୍ଷିତି,
ବିଜେ କଲେ ସ୍ନାନ ମଣ୍ଡପେ
ହୋଇ ହରଷ ମତି ।
ଭାଣ୍ଡିପତି ପଣ୍ଡା କଥାରେ
ଅଗୁଁ ସେଠାରେ ଥିଲେ,
ନୃପତି ସୌନ୍ଦର୍ଯ୍ୟ ବିଭବ
ଦେଖି ବିମୁଗ୍ଧ ହେଲେ ।

ପାଣ୍ଡିତ୍ୟ ଔଦାର୍ଯ୍ୟ ସାଧୁତା
ଅଧ ଅଳାପୁଁ ଜାଣି,
କନ୍ୟାଦାନେ କଲେ ସଂକଳ୍ପ
ସେହୁକ୍ଷଣି ନୃମଣି ।
ପଞ୍ଚାମୃତ ତୀର୍ଥୋଦକରେ
ପ୍ରଭୁ କଲେ ସ୍ନାହାନ,
ଶତ କୁମ୍ଭଜଳ ଉଦନ୍ତେ
ଶିରେ ପାଇଲ ସ୍ଥାନ ।
ଡିଣ୍ଡିମ ଦୁନ୍ଦୁଭି କାହାଳ
ଅଦ ପଣବ ନାଦ,
କର୍ଣ୍ଣ କୁହରକୁ ପଶିଣ
କଲ ଜନ୍ମାଇ ମୋଦ ।
ନନ୍ଦିକା ନନ୍ଦିନ ସ୍ନାହାନ
ମଣ୍ଡପକୁ କଢ଼ିଲ,
ପୂରିଲ ଦଗ ଦଗନ୍ତ
ଯାଏଁ ଅମରପୁରୀ ।
ସ୍ନାନାନ୍ତେ ଦଶିଲ ପ୍ରଭୁଙ୍କ
ଏକଦନ୍ତ ସୁନ୍ଦର,
ସୂପକର୍ଣ୍ଣ ଗଣ୍ଡ ବଶାଳ
ଗଜମୁଣ୍ଡ ସୁଣ୍ଡାଳ ।
ଚତୁର୍ଭୁଜ ପାଶ ଅଙ୍କୁଶ
ବରାଭୟ ଶୋଭିତ,
ସୁନ୍ଦର ଶ୍ରୀପଦ ଯୁଗଳ
ହରେ ଭକତ ଚିତ୍ତ ।

ମୂର୍ଚ୍ଛିତ ବାହାନେ ବରଜ-
ମାନ ପ୍ରଭୁଙ୍କୁ ଦେଖି,
ପ୍ରଣମି ପ୍ରସାଦ ସେବନେ
ହେଲେ ଚାହାଁଣ ସୁଖୀ ।
ବାରମ୍ବାର ପଦେ ପ୍ରଣମି
ଗଜମୁଣ୍ଡ ଶ୍ରୀପତି,
ଯୋଡ଼ହସ୍ତେ ହେଲେ ଦଣ୍ଡାୟ-
ମାନ ଜଙ୍ଗଲପତି ।
ଗଜ-ସେନାପତି ପ୍ରଭୃବେ
ହୋଇବାରୁ ରାଜନ,
ଗଜପତି ନାମେ ସ୍ୱଦେଶେ
ଲଭିଥିଲେ ସମ୍ମାନ ।
ଗଜରୂପଧାରୀ ଶ୍ରୀଜଗ-
ନ୍ନାଥ ହେବାରୁ ପତି,
ଗଜପତି ନାମେ ସର୍ବତ୍ର
ଖ୍ୟାତ ଜଙ୍ଗଲପତି ।
ମାଦଳା ପାଞ୍ଜିରେ ଲେଖାଇ
ଦେଲେ ପ୍ରତି ବରଷ,
ଗଣପତିରୂପୀ ସ୍ନାନାନ୍ତେ
ହେବେ ଶ୍ରୀ ଜଗଦୀଶ ।
ଦାଶରଥି ଅଧ ସ୍ୱଅର
ପ୍ରଭୁ ଦର୍ଶନ ବେଳେ,
ଭକ୍ତିଭରେ ନମି ଶ୍ରୀପଦେ
ଜଣାଇଲେ ଅନ୍ତରେ ।

ହେ ଦେବ ଉତ୍କଳ ସମ୍ରାଟ
ଢୋଇଅଛୁ ଶ୍ରୀପଦ-
ଧୂଳି ପ୍ରଭାବରୁ ସେ ପୁଣି
ପ୍ରତିଷ୍ଠାରେ ଅସ୍ପଦ ।
ଏତିକି ମାତର ମାଗୁଣି
ତୁମ୍ଭ କୃପା ବଳରେ,
ଚିରସ୍ଥାୟୀ ତାର ଗୌରବ
ମାନ ରହୁ ସଂସାରେ ।
ଅନନ୍ତର ନୃପେ ଗମିଲେ
ନିଜ ବାସ ବସାକୁ,
କାଞ୍ଚିପତି ମନେ ଭାବିଲେ
ନୃପେ କନ୍ୟା ଦେବାକୁ ।

———

## — ତୃତୀୟ ସର୍ଗ —

ଶୁଭଦିନେ ଶୁଭ ଲଗ୍ନରେ
କନ୍ୟାଦାନ ପ୍ରସ୍ତାବ,
କରାଇଲେ କାଞ୍ଚି ନରେଶ
ମନେ କରି ଗୌରବ ।
ସେ ପ୍ରସ୍ତାବ ବାଣୀ ଅକ୍ଷର
ଅକ୍ଷରକେ ଅମୃତ,
ସ୍ୱୋଦ ନୃପକର୍ଣ୍ଣେ ସେବାଳେ
ଲୁହାଇଲା ସନ୍ତତ ।

ମନ୍ଦ ଲୋଡ଼ୁଥିଲ ଡାକର
ପାଣି ଅସି ବଇଦ,
ଦବାଇଲ ଅମ୍ଳିକ ତୋଡ଼ାଣି
ମଦେ ଏଦ୍ଧାର ଗଦ ।
ମନ ଲୋଡୁଥାଏ ସେ କଥା
ତନେ ପୂର୍ଣ୍ଣ ହୁଅଇ,
ବାଲ୍ଲ କୃପା ତହିଁ କାରଣ
ଶାସ୍ତ୍ର ବାଣୀ ଅଟଇ ।
ବସୁଦନ୍ଙ୍କୁ ଯାକୁ ହୃଦୟ-
ସିଂହାସନେ ବସାଇ,
ଥିଲେ ନୃପବର ଦ୍ବିଜ୍ଞ
ତହିଁ କରନ୍ତେ କାହିଁ ।
କରଥିଲେ ବସୁଦନଙ୍କୁ
ଯାକୁ ପ୍ରାଣ ଦୋସର,
ତାଙ୍କ ପିତା ଜାଣି ତାହାଙ୍କୁ
କଲେ ଅତ ଅଦର ।
ବସାଇ ସୁବର୍ଣ୍ଣ ଅସନେ
କଲ ମହା ଗୌରବ,
ସେ ପ୍ରସ୍ତାବେ ପୂର୍ଣ୍ଣ ସ୍ବୀକୃତ
ହେଲେ କଲୁଲ ଧବ ।
ଏମନ୍ତ ସମୟେ ଗୁଣ୍ଡିଗୁ
ଯାତ ହେଲ ପ୍ରବେଶ,
ରଥପରେ ବଜେ ହୋଇଲେ
ପ୍ରଭୁ ଶ୍ରୀଜଗଦୀଶ ।

ନିଜ ନିଜ ସେବା କରମେ
ଲିପ୍ତ ହେଲେ ସରବେ,
କାହାର ମନରେ ଗରବ
ମାନ ନ ଥିଲା ଲବେ ।
ଗଜପତି ଭକ୍ତି ପ୍ରବଣ
ହୋଇ ଚନ୍ଦନ ବାରି,
ସିଞ୍ଚି ଓଳାଇଲେ ରଥରେ
ସ୍ୱର୍ଣ୍ଣ ମର୍ଜ୍ଜନୀ ଧରି ।
ଥିଲେ ତାଙ୍କ ପାଶେ ଅନେକ
ଦାସ ତଥାପି ନୃପ,
ପ୍ରଭୁଙ୍କ ଶ୍ରୀପଦ ସେବାରେ
ନିଜେ ହୋଇଲେ ଲିପ୍ତ ।
ଦେବାଳୟ ମଧ୍ୟେ ପଣ୍ଡିତ
ବାଲିକଣା ଓଳାଇ,
କେତେ ଭକ୍ତ ଦେବ ଲୋକରେ
ଛନ୍ତି ସୁସ୍ଥାନ ପାଇ ।
ଏ କଥା ଜାଣନ୍ତି ଭକତ
ସାଧୁପ୍ରିୟ ନୃପତି,
ତେଣୁ ସେହିଭାବେ ସେଠାରେ
ସେବୁଥିଲେ ଶ୍ରୀପତି ।
ନ ଥିଲା ତହିଁରେ ତାଙ୍କର
ରାଜ ଗରବ ଲେଶ,
ଏହିମାତ୍ର ସାର ସଂସାରେ
ଜାଣିଥିଲେ ନରେଶ ।

ଭାଣ୍ଡପତି ତାଙ୍କ ସଙ୍ଗତେ
ଥିଲେ ଦେଖିଲେ ତାହା,
"କି କଷ୍ଟ କି କଷ୍ଟ" ନୃପତି
ମନେ ଭାବିଲେ ଏହ ।
ଅଭିମାନ କୁଳ-ମର୍ଯ୍ୟାଦା
ଥିଲା ତାହାଙ୍କଠାରେ,
ହୀନକର୍ମ ଦେଖି ଘୃଣାରେ
ନୃପ ଜଳି କ୍ରୋଧରେ ।
ଭାବିଲେ ଏ ଅଟେ ଚଣ୍ଡାଳ
କର୍ମ ନୃପ କେମନ୍ତେ,
ସ୍ୱହସ୍ତରେ କଲେ ଏଠାରେ
ଦେଖୁଛନ୍ତି ସମସ୍ତେ ।
ଜାଣିଶୁଣି ମୋର ଦୁହିତ
ରହୁ ଏହାଙ୍କ ମୁହିଁ,
କାପର ଅର୍ପିବ ସମ୍ବନ୍ଧ
ସ୍ଥିର କଲି କିପାଇଁ ।
ସେହିକ୍ଷଣି ନୃପ ବିମନା
ହୋଇ ବସାକୁ ଗଲେ,
ପ୍ରଭୁଙ୍କ ଚରଣ ଦର୍ଶନେ
ଆଉ ମନ ନ ଦେଲେ ।
ଡକାଇ ପଣ୍ଡାଙ୍କୁ କହିଲେ
ନୃପ ସଙ୍ଗେ ନୃପର,
ସମ୍ବନ୍ଧ ସଙ୍ଗତ ଅଟଇ
ଅନେ ନୁହେଁ ସୁନ୍ଦର ।

ନାମେ ପ୍ରଭୁ ହୋଇ ଭାମନ୍ତେ
ଅଟେ ଯେହୁ ଚଣ୍ଡାଳ,
କପଟ ତାହାକୁ ଜାମାତା
ପଦେ ବରିବା ବୋଲ ।
ରୂପ ଗୁଣ କୁଳ ଗୌରବ
ଦେଖି ଜାମାତା ପଣେ,
ବରିବ ବରକୁ ଏକଥା
ଧର୍ମଶାସ୍ତ୍ର ବଖାଣେ ।
ଛେଷ ପହରରେ ଅଜ ମୁଁ
ନେବେ ଦେଖିଲି ଯାହା,
ନୁହେଁ ସେ ରଜାର ଚରମ
ଶୋଭେ ଚଣ୍ଡାଳେ ତାହା ।
କରଥିଲି ସତ୍ୟ ରଜାଙ୍କୁ
କନ୍ୟା ଦାନ କରିବି,
ରଜା ନୁହେଁ ସେ ତ ଚଣ୍ଡାଳ
ତାକୁ କନ୍ୟା ନ ଦେବି ।
ଅନନ୍ତର ଥାଟ ସଙ୍ଗତେ
ଭାଞ୍ଚପତି ପ୍ରଧାଣ,
କରନ୍ତେ ନବାର ବୋଇଲେ
ପଣ୍ଡା "ମହିମା ଶୁଣ,
ସେବନ୍ତି ଯେ ପଦ-କମଳ
ଦେବାସୁର କିନ୍ନର,
ଯକ୍ଷ ନାଗ ଅଦ ସେ ପଦ
ସେବା ନୃପତିଙ୍କର ।

ହୋଇଲ୍ଷ କାପର ଜଘନ୍ୟ
ବଗୃରଭ ଅପଣ,
ବଗୃର କରନ୍ତୁ ମନରେ
ନୃହେ ମାନଭଞ୍ଜନ ।
ସ୍ବଚ୍ଛବାର ଅଙ୍କ ଏବାରେ
ଲକ୍ଷ୍ମୀପତି ଅସ୍ଥାନ,
ସ୍ଥଡ଼ିଲେ କମଳା ସ୍ଥଡ଼ନ୍ତି
ଏହା ଶାସ୍ତ୍ର ବଚନ ।
କୋପେ ପ୍ରଜ୍ୱଳିତ ନୃପତି
ହୋଇ ରକ୍ତଲୋଚନ,
ବୋଇଲେ ଏସବୁ ଅଟଇ
ଦୁର୍ବଳର ଭାଷଣ ।
ଲକ୍ଷ୍ମୀ ରକ୍ଷଣରେ ସୁଦକ୍ଷ
ଭୁଜଦଣ୍ଡ ମୋହର,
ଶରଣ କେବଳ ଅଟନ୍ତି
ଗଣପତି ପଦ୍ମର ।
ଭକତ ଗୌରବେ ହୁଅନ୍ତି
ପ୍ରଭୁ ଗୌରବାନ୍ୱିତ,
ଚଣ୍ଡାଳର ପ୍ରଭୁ ପଦ୍ମରେ
ମୋର ନ ଲଗେ ଚିତ୍ତ ।
ଚଣ୍ଡାଳ ପ୍ରଭୁର ଅସ୍ଥାନେ
ନ କରିବ ବସତି ।
ଲେଖାଅଛି ଶାସ୍ତ୍ରେ ତେଣୁ ମୁଁ
ଯାଉଅଛି ଫେଟି ।

ଗମନ୍ତେ ନୃପତି ସେଠାରୁ
ପଣ୍ଡା ଚଣ୍ଡ ବେଗରେ,
ରାଜଭବନକୁ ପ୍ରସ୍ଥାନ
କଲେ ଦୁଃଖ ଅନ୍ତରେ ।
ରାଜ ସିଂହାସନେ ବିରାଜ-
ମାନ ନୃପଙ୍କ ଦେଖି,
କହିଲେ ବ୍ୟାକୁଳ ଅନ୍ତରେ
ତାଙ୍କ ମୁଖ ନିରେଖି ।
ମଣିମା ଶୁଣିମା ହେଉନ୍ତୁ
ଭାନୁପତ୍ତି ଭୂପଣି,
ଯାହା ମୋ ମାନସ ପଟକୁ
କରୁଅଛି କଠିନ ।
ହେବ ପହରରେ ଯେମ୍ନଙ୍କ
ପ୍ରଭୁ ସେବା କରେଣି,
ଅକ୍ଷେପି ଗରବେ କହିଲେ
ବନ୍ଧୁଭାବ ଉପେକ୍ଷି ।
ଏ ଅଟେ ଚଣ୍ଡାଳ କରମ
ନୁହେଁ ରାଜ ଧରମ,
ନ କରିବି ଦାନ ଚଣ୍ଡାଳେ
ମୋର କନ୍ୟା ରତନ ।
ଚଣ୍ଡାଳ ପ୍ରଭୁର ଅସ୍ଥାନେ
ନ କରିବି ବସତି,
ଲେଖିଅଛି ଶାସ୍ତ୍ର ତେଣୁ ମୁଁ
ଯାଉଅଛି ସମ୍ପ୍ରତି ।

କନ୍ୟାଭଙ୍ଗ ଯୋଗୁ ଝଲ୍ଲନ-
ପତି ବ୍ୟଥିତ ଥିଲେ,
ଫଲ୍ଗୁଙ୍କ ଦୁର୍ବାଦ ଶ୍ରବଣେ
ରାଗି ଯାଇ କହିଲେ,
ଅପି କନ୍ୟାଦାନ ପ୍ରସ୍ତାବ
ନିଜେ ଉତ୍ଥାନ କଲେ
ଦୋଷ ଫଲ୍ଗୁପଦେ ଆରୋପି
ତାହା ନିଜେ ଭାଙ୍ଗିଲେ ।
ସ୍ନେହସୂତ୍ରେ କଲେ ବନ୍ଧନ
ତେଣୁ ବାନ୍ଧବ ହେଲେ,
ଶେଷେ କଶାଘାତ କରି ସେ
ନିଜ ଘରକୁ ଗଲେ ।
ନିନ୍ଦା, ସ୍ତୁତିମୟ ଜଗତ
ବିଶେଷରେ ମୂର୍ଖଣୀ,
ଭୂଷଣର ଅର୍ଥ କଣ୍ଠହିଁ
ନାହିଁ ଏ ଶାସ୍ତ୍ର ମତ ।
ଦୁଷ୍ଟ ଶାନ୍ତ ହୁଏ ଜଗତେ
ଖାଲି ଦଣ୍ଡ ବଳରେ,
ସାମ ଦାନ ଭେଦେ ତାହାର
ଶାନ୍ତି ନ ଆସେ ଭଲେ ।
ଧନୁର୍ବେଦ ମତ ସ୍ଥାନରେ
ଯଜ୍ଞ ଜାତି ବିବାହ,
ପ୍ରସିଦ୍ଧ, ମୁଁ ଅଟେ ଯବନସୁ
ତେଣୁ ହେଲି ବିଦ୍ରୋହ ।

ଏହା କହୁ କହୁ ନୃପଙ୍କ-
ଠାରେ କ୍ରୋଧ ମୂରତି,
ପ୍ରବେଶିଲ୍ଲ ମାନ ଗାମ୍ଭୀର୍ଯ୍ୟେ
ଥିଲେ ପ୍ରସନ୍ନ ଅତି ।
କରି ନିଜଭାବ ଗୋପନ
ଶାନ୍ତ ଶିଷ୍ଟ ସ୍ୱଭାବେ,
ସଭାମଧ୍ୟେ କଲେ ପ୍ରତିଜ୍ଞା
ଭୟ ନ କରି ଲବେ ।
ନିଜ ବାହୁବଳେ ତାହାଙ୍କ
ଗର୍ବ କରି ଖଣ୍ଡନ,
ଅକ୍ଷିକି ଏ ମୋର ନିର୍ବନ୍ଧ
ସେହୁ ଜନ୍ମା ରତନ ।
ଅନ୍ତରେ ଗର୍ବିତ ନୃପତି
ଧର୍ମ ମାର୍ଗରୁ ଭ୍ରଷ୍ଟ,
ହୋଇବାରୁ ପ୍ରଭୁ ହୋଇଲେ
ତାଙ୍କ କାର୍ଯ୍ୟରେ ରୁଷ୍ଟ ।
ଅଶକୁନ ବାଟେ ଦେଖିଲେ
ଗଜପତି ଅନେକ,
ତଥାପି ପବେଶ ତାଙ୍କର
ହୁଦେ ନ କଲା ଦକ,
ଶୁଣିଲେ କାଞ୍ଚୀଶ ଜଙ୍ଗଲ
ଧର ଚତୁରଙ୍ଗରେ,
ଅସନ୍ତି ଯୁଝିବା ମାନସେ
ସଙ୍ଗେ ତାଙ୍କ ସଙ୍ଗରେ ।

ଗଣପତି ପାଦେ ପ୍ରଣାମ
କର କଲେ ଗୁହାର,
ହେ ଗଣନାୟକ ଦାସକୁ
କର ଏ ଦୁଃଖେଁ ପାର ।
ତୁମ୍ଭ ବାହୁବଳ ସହାୟ
ଲଭି ଦେବତାବୃନ୍ଦ,
ସଂହାର ରାକ୍ଷସମାନଙ୍କୁ
ହୋଇଛନ୍ତି ନିର୍ଦ୍ଦ୍ୱନ୍ଦ ।
ସ୍ମର ତୁମ୍ଭନାମ ଭକତ
ବିଘ୍ନ ବ୍ୟୂହ ମୁକତ,
ହୋଇଛୁ ହେଉଛୁ ହୋଇବ
ଘୋଷୁଅଛୁ ଜଗତ ।
ଶ୍ରୀପଦ ବ୍ୟତୀତ କଦାପି
ସେବ ନାହିଁ ମୁଁ ଅନ,
ବିପଦ ସାଗରୁ ଉଦ୍ଧାର
କର ହେ ଗଜାନନ ।
ଏମନ୍ତ ସମୟେ ଶୁଭିଲା
ନଭୁଁ ସାନ୍ତ୍ୱନା ବାଣୀ ।
ଚିନ୍ତା ଛାଡ଼ ମନୁ ନିର୍ଭୟେ
ଯୁଦ୍ଧ କାଞ୍ଚିନୃମଣି ।
ପ୍ରଭୁ ପ୍ରସାଦରେ ଭୂଷିତ
ଭକ୍ତବର କାଞ୍ଚୀଶ,
ଯୁଦ୍ଧୁଁ ଜୟଲକ୍ଷ୍ମୀ ସଙ୍ଗତେ
ଗଲେ ଆପଣା ବାସ ।

———

# ଚତୁର୍ଥ ସର୍ଗ

ବିଜୟ ଉଲ୍ଲାସେ ସର୍ବେ
ରଚିଥିଲେ ସୁବେଶ,
ପଦ୍ମାବତୀ ହୃଦେ ସେ ବାର୍ତ୍ତା
ପ୍ରହାରିଲା କୁଳିଶ ।
ହୃଦୟରୁ ଦୂର ହେବାରୁ
ନୃପ ମିଳନ ଆଶା;
ତାଙ୍କ ମୁଖ-ପଦ୍ମ ମୁଦ୍ରିତ
ହୋଇଗଲା ସହସା ।
ପତି ପ୍ରାପ୍ତି ଆଶା ହୃଦରୁ
ହୋଇବାରୁ ଅନ୍ତର,
ଦୁରାଶା ସେଠାରେ ସହସା
ଥିଲା କରିଣ ଘର ।
ଦ୍ୱାରେ ଦ୍ୱାରେ ପ୍ରତ କଳଶେ
ହେଲା ଜଳ ପୂରଣ,
ଅପୂର୍ଣ୍ଣତା ତାଙ୍କ ହୃଦୟେ
ତେଣୁ କଲା କି ସ୍ଥାନ ।
ବାଦ ମେଳ ଶଙ୍ଖ ଧ୍ୱନିରେ
ପୂରିଯିବାରୁ କ୍ଷିତି,
ତାହାଙ୍କ ମନେ କି ଶୂନ୍ୟତା
ଭରିଥିଲା ବସତି ।

ପ୍ରଦୀପ ପ୍ରଭାରେ ସେ କାଳେ
କାହିଁ ନ ପାଇ ସ୍ଥାନ,
ଅନ୍ଧକାର ତାଙ୍କ ହୃଦେ କି
କଲା ଗୃହ ନିର୍ମାଣ ।
ଶାନ୍ତିବାରୁ ଏକ ମାତର
ପ୍ରିୟତମ ଚରଣ,
ଥିଲେ ଜଡ଼ବତ ସେକାଳେ
ତାଙ୍କ ଇନ୍ଦ୍ରିୟଗଣ ।
ବାଷ୍ପରୋଧ ଯୋଗୁଁ ବଚନ
ନ ସ୍ଫୁରିଲା ତାଙ୍କର,
ଦର୍ଶନ ଶକତି ବିନାଶ
କଲା ନୟନ ନୀର ।
କାମାଗ୍ନିରେ ତପ୍ତ ପବନ
ହୋଇବାରୁ ନିର୍ଗତ,
ଶ୍ରବଣ ଯୁଗଳ ହୋଇଲା
ଶବ୍ଦ ଶ୍ରୁତି ରହିତ ।
ଅଙ୍ଗ କେତେ ଅଂଶ ବାହାରି-
ବାରୁ ନାସା ରନ୍ଧ୍ରରେ,
ଅଘ୍ରାଣ ଶକତି ରହିଲା
ତାର ଅତ୍ୟନ୍ତ ଦୂରେ ।
ଗ୍ରାହିକା ଶକତି ବିହୀନ
ଥିଲା ହସ୍ତ ଯୁଗଳ,
ସଞ୍ଚାର ବଳରେ ରହିତ
ହେଲା ପଦ ଯୁଗଳ ।

ବାଘୁଣୀ ପରାଏ ଭେଦଲ
ଗୁଲ୍ ଗୁଲ୍ ଗୁହିଁଲେ,
ସଖୀମାନେ ଦେଖି ଅତ୍ୟନ୍ତ
ଭୀତ ତ୍ରସ୍ତ ହୋଇଲେ ।
ପରାଭୂତ ହୋଇ ଜଳିଲ-
ପତି ଦଇବ ବଳ,
ଅମାପ ଭୁଞ୍ଜିଲେ, ତେଣୁ ସେ
ହେଲେ ମନେ ବିକଳ ।
ବିଜିତ ସଇନ ସଙ୍ଗରେ
ଫେରିଥିଲେ ଜହ୍ନିଲେ,
ତେଣୁ ଶାନ୍ତ ତାଙ୍କ ମାନସ
ପ୍ରଟେ ନଥିଲ ତିଳେ ।
ବ୍ୟାକୁଳ ଅନ୍ତରେ ପ୍ରାସାଦେ
ଯାପିଥିଲେ ଜୀବନ,
ପଦ୍ମାବତୀ ରତି ଲମ୍ପଟ
ଥିଲା ସନ୍ତତ ମନ ।
ହେ ବିଧାତା ମୋତେ ଅମୃତ
ଘଟ ଦେଖାଇ ଦେଲ,
ପାନ କଲାବେଳେ ତା ହାତୁଁ
କାଢ଼ି ଛଡ଼ାଇ ନେଲ ।
ବୁଭୁକ୍ଷିତ ଅର୍ଥୀ ମୁଖରୁ
ଅନ୍ନ ଛଡ଼ାଇ ନେଇ,
ଜଗତରେ ଯଶ ଅର୍ଜିବୁ
ପର ଭାବିଲୁ ହୃଦ ।

ଚରାଚର ପ୍ରାଣୀ ମଙ୍ଗଳ
ଅଟେ ତୋର ଭୂଷଣ,
ଅଜ୍ଞ ମୋହଠାରେ କାହିଁକି
ହେଲୁ ଏଡ଼େ ଦାରୁଣ,
ରାଜ ସିଂହାସନ ଦେଖାଇ
ଭଲ୍ ଦାଣ୍ଡ ଭିଖାରୀ,
ଚନ୍ଦ୍ରବ ସନ୍ତତ ସେ ମୁଖ
ତାମରସ ମାଧୁରୀ ।
ସେ ନେତ୍ର ଯୁଗଳ ସେ କର୍ଣ୍ଣ-
ଦ୍ୱୟ ସେ କେଶପାଶ,
ସେହ ବାହୁ ଯୁଗ୍ମ ସେ କଟି
ସେହ ରୂଚ୍ଛ ସୁବେଶ ।
ସେ ପଦକମଳ ସୁଷମା
କର କର ସ୍ମରଣ,
ଗାଇବା ତୋହର ସୁଯଶ
ଏହା ତୋର ଭୂଷଣ ।
କହୁ କହୁ ଏହ ଭାବନା
ନରପତଙ୍କ ଚତ୍ତ,
ପ୍ରଭୁ ପାଦପଦ୍ମ ଯୁଗଳେ
ହୋଇଥିଲା ଅସକ୍ତ ।
ଭକତ ଗୌରବ ନିଧାନ
ଦୁଃଖୀ-ଦୁଃଖ ଖଣ୍ଡନ,
ମୁରାରି ଶ୍ରୀପଦ ଯୁଗଳ
କଲେ ସନ୍ତତ ଧ୍ୟାନ ।

ନିତ ନିତ ଯାଇ ପ୍ରଭୁଙ୍କ
ପାଦ କଲେ ବନ୍ଦନ,
ଆରତ ଭଗିନୀ ଭକତ
ଏଥି ଗୀତା ପ୍ରମାଣ ।
ଭକ୍ତିଭରେ ଯୋଡ଼ ହସ୍ତରେ
ପ୍ରଭୁ ପଦେ ଗୁହାରି,
କଲେ ଭକ୍ତବନ୍ଧୁ ଆପଣ
ଭକ୍ତ ଗଲ୍ପଟି ସାର ।
ସେବାବ୍ରତ ଅଟେ ସେବକ
ତାର ସମ୍ମାନ ନାହିଁ,
ପ୍ରଭୁ ଅନୁକମ୍ପା ବଳରୁ
ବଡ଼ ହୁଅଇ ସେହି ।
ତ୍ରିଲୋକୀ ସର୍ଜନ ପାଳନ
ସଂହାରକ ଆପଣ,
ତୁମ୍ଭ ପାଦପଦ୍ମ କେବଳ
ପ୍ରଭୁ ମୋର ଶରଣ ।
ଶ୍ରୀପଦ ପ୍ରସାଦ ବଳରୁ
ରାଜ ସମ୍ମାନ ମୁହିଁ,
ମାନ ବଢ଼ାଇଣ ପାଇଛୁ
ମାନ ରକ୍ଷା ଗୋସାଇଁ ।
ମୁଷ୍ଟିକ ଚାଣୂର ସହିତେ
କଂସାସୁର ନିଧନ,
କରି ବଢ଼ାଇଲ ବ୍ରଜକୁ
ଆହେ ବ୍ରଜମୋହନ ।

କୁମ୍ଭକର୍ଣ୍ଣ ଇନ୍ଦ୍ରଜିତାଦି
ସଙ୍ଗେ ମାରି ରାବଣ,
ଶାନ୍ତ ଜଳପରେ ଶୁଆଇ
ଭଲ ଜଗତଜନାଣ ।
ତୁମ୍ଭ ନିନ୍ଦା କରି ଜଗତେ
ଦେବ ଦାନବ ଯକ୍ଷ,
ଲଭିନାହିଁ କେହୁ କଲ୍ୟାଣ
ଏହା ଅଟେ ପ୍ରତ୍ୟକ୍ଷ ।
ଭାଞ୍ଜିପତି ଅବମାନନ
ସହ୍ୟ ହେଲା କମିତ,
ଶ୍ରୀଚକ୍ର ନାହିଁକି ହସ୍ତରେ
ଚକ୍ରପାଣି ସପ୍ରତ ।
ସେହୁଦନ ରାତ୍ରି ଶେଷରେ
ନରମଣି ସ୍ୱପନ,
ଦେଖିଲେ ଅସିଣ ସନ୍ୟାସୀ
ହୋଇ ପ୍ରସନ୍ନ ମନ ।
ସମ୍ବୋଧି ତାହାଙ୍କୁ କହିଲେ
ମନେ ନ କର ଭୟ,
ଏଥର ବିଜୟ ଲଭିବ
ଏଥି ନାହିଁ ସଂଶୟ ।
ସଙ୍କେତ ସେଥିର ପାଇବ
ତୁମ୍ଭେ ଯାତ୍ରାରମ୍ଭରେ,
ପଥ ମଧ୍ୟେ ପୁଣି ସଂଶୟ
ନାହିଁ କହୁଛୁ ଭଲେ ।

ନିଜ ବାହୁବଳ ସହାୟେ
ଯାଇଥିଲ ପୂର୍ବେ,
ତେଣୁ ତାର ଫଳ ଭୋଗିଲ
ଭୀତ ନ ହୁଅ ଏବେ ।
ସ୍ୱଧର୍ମ ପରିପାଳନ
ପ୍ରଭୁ ପଦ ସେବନ,
ଚିରନ୍ତନ ଯୁଦ୍ଧ ଗ୍ରନ୍ଥରେ
କର ଏବେ ପ୍ରୟାଣ ।
ହୋଇଗଲେ ନୃପତିଳକ
ଭଗ୍ନ ନିଦ୍ରା ସହସା,
ଜନମିଲା ତାଙ୍କ ହୃଦୟେ
ତାଙ୍କ ବିଜୟ ଆଶା ।
ଦକ୍ଷିଣ ନୟନ ସ୍ଫୁରିଲା
ବାହୁ ସଙ୍ଗେ ତାଙ୍କର
ପ୍ରସନ୍ନ ବଦନ ହୋଇଲେ
ତେଣୁ ନୃପଶେଖର ।
ଶଯ୍ୟା ତ୍ୟାଗ କରି ଚିନ୍ତିଲେ
ପ୍ରଭୁ ପଦ୍ମଚରଣ,
ପ୍ରଭାତୁଁ ସେବନ ଦେଖିଲେ
ବହୁ ଶୁଭ ଶକୁନ ।
ସ୍ନାନ ସନ୍ଧ୍ୟା ଦେବର୍ଚ୍ଚନାଦ
ସାରି ଉତ୍କଳମଣି,
ଗଲେ ସମ୍ଭ୍ରମେ ହୃଦୟେ
ଚିନ୍ତି ଶ୍ରୀ ଚକ୍ରପାଣି ।

ରାଜାଦେଶ ପାଳ ସେଠାରୁ
ରାଜଗୁରୁ ସଶିବ,
ବୁଧ ପୁରୋହିତ ସେନାନୀ
ଆସି ମିଳିଲେ ସର୍ବ ।
ଜଣାଇଲେ ନୃପ ସଭିଙ୍କି
ରାତ୍ରିଗତ ସ୍ୱପନ,
ଆନନ୍ଦ ସାଗରେ ନିମଗ୍ନ
ହେଲା ସବୁରି ମନ ।
ଶ୍ରୀପଦ ଯୁଗଳେ ମାନସ
ରଖି ଭକତି ଭାବେ,
ଭାଷିଲେ ନୃପତି, ତହିଁରେ
ଗର୍ବ ନଥିଲା ଲବେ ।
ପର ଜାତି ଅପମାନରେ
ବିଚଳିତ ହୁଅଇ,
ପ୍ରଭୁ ନିନ୍ଦା ତାହା ସଙ୍ଗେ ମୋ
ମରମକୁ କାଟଇ ।
ଲେଖିଅଛି ଶାସ୍ତ୍ର ପ୍ରଭୁଙ୍କ
ପରିବାଦ କଦାପି,
ନ ଶୁଣିବ କର୍ଣ୍ଣ-କୁହର
ଦେବ ସହସା ଚାପି ।
ସ୍ଥାନୁଁ ସ୍ଥାନାନ୍ତର ହୋଇବ
ପ୍ରତୀକାରେ ଅକ୍ଷମ,
ଶକ୍ତିଥିଲେ ପ୍ରତିବିଧାନ
ତାର ମନୁଷ୍ୟ ପଣ ।

ଯାହାଙ୍କ ସଙ୍କେତ କ୍ରମରେ
ଖଣ୍ଡ ବ୍ରହ୍ମାଣ୍ଡ ଚଳେ,
ନାଦଚନ୍ଦ୍ର ତାଙ୍କ କେବଳ
ସ୍ଥିର ବାହୁ ବଳରେ ।
ନ କରିବି ଦାନ ଚଣ୍ଡାଳେ
କନ୍ୟା ରତନ କହୁ,
ନାହିଲେ ମୋ ସଙ୍ଗେ ପ୍ରଭୁଙ୍କ
ରକ୍ଷା କରିବ କେହୁ ।
ଯୁଦ୍ଧେ ଜିଣି ଅଣି ନିଶ୍ଚୟ
ତାଙ୍କ କନ୍ୟା ରତନ
କରାଇବି ଦାନ ଚଣ୍ଡାଳେ
ଏ ମୋ ସତ୍ୟ ବଚନ ।
ତାଙ୍କ ଇଷ୍ଟଦେବେ ଅଣି ମୋ
ପ୍ରଭୁ ପୁଷ୍ଟ ଦେଶରେ,
ରଖାଇବି ଏହା ସତ୍ୟ ମୁଁ
କହୁଅଛି ଏଠାରେ ।
ଶୁଣ ମୋ ପ୍ରତିଜ୍ଞା ବଚନ
କହୁଅଛି ମୁଁ ଏବେ,
ଗଜପତି କୁଳ ସନ୍ତାନ
ମିଥ୍ୟା କହେ କି କେବେ ?
ଶୁଣି ସେ ପ୍ରତିଜ୍ଞା ସାମନ୍ତ-
ମନ୍ତ୍ରୀ-ପୁରୋଧାଗଣ,
ସେନାପତି ସହ ନୃପଙ୍କୁ
କଲେ ଅଭିନନ୍ଦନ ।

ନିଜ ନିଜ ମତ ସମସ୍ତେ
କଲେ ତହିଁ ବ୍ୟକତ,
ଯୁଝିବା ସେଠାରେ କର୍ତ୍ତବ୍ୟ
ହେଲା ସବୁର ମତ ।
ସୁନ୍ଦ କହିଲେ ହେ ଜଳୁଳ-
ପଟ ନଦର ସ୍ୱାନ୍ତ,
ମହାବାହୁ ବାହୁ ଯୁଗଳ
ଅମ୍ଭ ସାହା ଅଟନ୍ତ ।
ପ୍ରଭୁ କଦା ଯୋଗୁଁ ଭାଞ୍ଜିଣ
ଆପେ ବନସ୍ଥ ହେବ,
ଆପଣ ତହିଁର କାରଣ
ମାନ ହୋଇବେ ଧ୍ରୁବ ।
ସତ୍ୟାବୃନ୍ଦ ତହୁଁ କହିଲେ
ପ୍ରଭୁ ଆଦେଶ ସ୍ଥଳେ,
ଆଉ କି ବଚାର କରିବା
ଅମ୍ଭେ ଏ ବିଷୟରେ ।
ଯା' ଅଙ୍ଗରେ ବସ୍ତି ସିଦ୍ଧିଦା
ହୋଇଅଛୁ ଜଗତେ,
ତାଙ୍କର ଆଦେଶେ ଚଳିବା
ସ୍ମର ତାହାଙ୍କ ଚିତ୍ତେ ।
"ସ୍ୱଧରମ ପରିପାଳନ
ପ୍ରଭୁପଦ ସେବନ"
ପ୍ରଭୁଙ୍କର ଏହି ଆଦେଶ
ନ କରନ୍ତୁ ଲଙ୍ଘନ ।

ଦୂତ ସମ୍ମୋଷଣ ପ୍ରଥମେ
ନରପତି ଧରମ,
ପାଳନ କରନ୍ତୁ ସର୍ବଥା
ରାଜନୀତି ବିଧାନ ।
ଯାଅ ଦୂତ ଅନ୍ୟ କଦନ୍ତ
ନେଇ କାଞ୍ଚୀଣ ପୁରେ,
ପୁଣି ଯୁଦ୍ଧସଜ୍ଜା ଆରମ୍ଭ
ହେଉ ଆମ ଏଠାରେ ।
ଏକମତ ହେଲେ ନୃପତି
ସଭ୍ୟଗଣ ମତରେ,
ଲେଖିଲେ ସନ୍ଦେଶ କାଞ୍ଚୀଶ
ପ୍ରତି ନିଜ ହସ୍ତରେ ।
"ଗଜପତି ଗୌଡ଼ ଈଶ୍ୱର
ନବକୋଟି କର୍ଣ୍ଣାଟ,
ଉତ୍କଳ ବର୍ଗର ସମ୍ରାଟ
ସୂର୍ଯ୍ୟବଂଶ ମୁକୁଟ ।
ଅନୁରୋଧ କାଞ୍ଚି ନରେଶ
ବନ୍ଧୁଭାବେ ଗ୍ରହଣ,
କର କର ପ୍ରଜାପାଳନ
ରଖ ମାନ ସମ୍ମାନ ।
ନିଜେ ଅପି କଲ ପ୍ରସ୍ତାବ
ତୁମ୍ଭେ କନ୍ୟା ଦାନର,
ପୁଣି ଅନ୍ୟଠାରେ ମୋଠାରେ
ଦୋଷ ଅରୋପି ଗଲ ।

ହର ବ୍ରହ୍ମା ଇନ୍ଦ୍ର ପ୍ରଭୃତି
ଯେଉଁ ପଦ ସେବକ,
ସେହୁ ପଦ ସେବା ମୋର କି
ହେଲା ମାନ ନାଶକ ।
"ଅଜ୍ଞେ ବୁଝାଇବା ସହଜ
ବିଜ୍ଞେ ଅତି ସହଜ,
ଅଳ୍ପଜ୍ଞାନେ ମଣେ ନିଜକୁ
ଯେହୁ ସର୍ବଜ୍ଞରାଜ ।
ବୁଝାଇବା ପାଇଁ ତାହାକୁ
ଧାତା ମଧ୍ୟ ଅକ୍ଷମ
କହୁଅଛି ନୀତି ଏ ବାକ୍ୟ
ତୁମ୍ଭେ ତାର ପ୍ରମାଣ ।
ପ୍ରଭୁ ନିନ୍ଦା କରି କେଉଁଠି
ଲଭିନାହିଁ କେ ଶାନ୍ତି ।
ଶ୍ରୁତି ସ୍ମୃତି ଇତିହାସାଦି
ସମସ୍ତରେ କହନ୍ତି.
ନିନ୍ଦଛ ପ୍ରଭୁଙ୍କ ଶ୍ରୀପଦ
ନାହିଁ ତୁମ୍ଭର ଜ୍ଞାନ,
ଜାଣିଛି ଦଇବ ହୋଇଛି
ନିଶ୍ଚେ ତୁମ୍ଭଙ୍କ ବାମ ।
"କ୍ଷମା ଭିକ୍ଷା ମାଗ ଶ୍ରୀପଦେ
କର ଦଣ୍ଡ ପ୍ରଣାମ"
ନିଜ କନ୍ୟାଦାନେ ମୋହର
ହୁଅ ପ୍ରୀତି ଭାଜନ ।

"ଅବୋଧ ବନ୍ଧୁତା ନାଶକ
ଜାଣନ୍ତି ତ ଆପଣ,
ସେଥିପାଇଁ ବାରମ୍ବାର ମୁଁ
କରିଅଛି ସ୍ମରଣ ।
ସାମ ଦାନେ ଶାନ୍ତି ଅସଇ
ତେଣୁ ଦୂତ ପ୍ରେଷଣ,
କର ଜଣାଇଲି ପ୍ରଥମେ
ଏହା ରାଜ ଧରମ ।
ଶ୍ରୀ ଚନ୍ଦ ମୋହର ଅଙ୍କନ
କର ପତ୍ର ମୁଦଲେ,
ପ୍ରଣିଧି ହସ୍ତରେ ତା ଦେଇ
ଯାଅ ବୋଲି କହିଲେ ।
ନେଇ ପତ୍ର ଦୂତ ଗମିଲା
ଘୋଟକରେ ତ୍ୱରିତ,
ତାହିଁ ନରପତି ସଭାରେ
ହେଲା 'ସମୁପଗତ ।
ଜଣାଇଲା, "ବୀର ଉତ୍କଳ-
ସମ୍ରାଟଙ୍କ କିଙ୍କର,
ମୁଁ ଅଟେ ତାହାଙ୍କ ଶ୍ରୀକର
ଲେଖ ଏ ନରବର ।
ଏହା କହି ପତ୍ର ଦଅନ୍ତେ
ଖୋଲି ଦେଖି ତାକ୍ଷୀଣ
କୋପେ ପ୍ରଜ୍ୱଳିତ ହୋଇଲେ
କରେ ଅର୍ପି କ୍ଷଣ ।

ବୋଇଲେ "କିଏ ସେ ଅନ୍ତରେ
ବନ୍ଦୀକର ଏହାଙ୍କୁ,
ଜଜ୍ଞାର କରୁ ଜେ କଅବ
ଭଲ ଦେଖିବା ତାଙ୍କୁ ।
ଅପରାଧ ଦେଖି ଦଣ୍ଡିବ
ନୀତି ଭାଷଣ ଏହୁ,
ନାଶିବ ଏହାର ଗରବ
ରକ୍ଷା କରିବ କେହୁ ।
ଏହା କହୁ କହୁ ନୃପତି
ବନ୍ଦୀ ରକ୍ଷକଗଣେ,
ବନ୍ଦୀ କଲେ ତାଙ୍କୁ, କହିଲ
"ଶୁଣ ହେ ଭାଈଗଣ ।
ଅବଧ ଅଦଣ୍ଡ୍ୟ ଅଟଇ
ଦୂତ" ଏ ଶାସ୍ତ୍ର ମତ,
ତଥାପି ଜଙ୍ଗଲ ସନ୍ତାନ
ଛଳେ ନ ହୁଏ ସ୍ଥିତ ।
ବୀରପ୍ରସୂ ନାମ ଯାହାର
ଲୋକେ ହୋଇଛୁ ଖ୍ୟାତ,
ସେ ଜଙ୍ଗଲ ଦୂତ ଏଥିରେ
ଲଭେ ହେବ କି ଭୀତ ।
ଜୀବନ ଚେତନ ଯାହାର
ବଡ଼ଦେଉଳ ଶିରେ,
ବଢ଼ୁଛି, ତାହାର ସନ୍ତାନ
କେବେ ଡରେ କି ଛଳେ ।

ସାତକର୍ଣ୍ଣୀ ଲୋକ ସମ୍ପ୍ରୀତ
ପୁଷ୍ୟାମିତ୍ର ବାଜସ୍ୱୀ,
ଖାରବେଳ ଭ୍ରାତା ହୃଦୟ
ତରେ କାହା ଥରଇ ?
ଜୟସ୍ତମ୍ଭ ସେତୁବନ୍ଧରେ
ପୋତା ହୋଇଛି ଯାର,
ତାର ସୁତ ହୃତ ଅନ୍ତରେ
କେବେ ପଶେ କି ଡର ?
ପ୍ରତିଜ୍ଞା କରୁଛି ମୋ ପ୍ରଭୁ
ଅପି ଭୂମ୍ଯ ନଗର,
ଚୂର୍ଣ୍ଣ କର ଯଦ କରନ୍ତୁ
ଏ ଦାସକୁ ଡକାର ।
ତାହାହେଲେ ଯିବ, ନ ହେଲେ
ବେଢ଼ ହାତରେ ଥିବ,
ଉତ୍କଳ କୀରତି କେତନେ
କଳା ଦାଗ ନ ଦେବ ।
ଏ ସମ୍ବାଦ ଦେଶୁଁ ଦେଶରେ
କାନୁଁ କାନେ ଛୁଟିଲା,
ଉତ୍କଳ ସମ୍ରାଟ ସଭାରେ
ଯାଇ ପହୁଞ୍ଚିଗଲା ।
ନବପନ୍ତ ଯୁଦ୍ଧସଜ୍ଜାରେ
ଅଗ୍ରୁଁ ସଜ୍ଜିତ ଥିଲେ,
ପଡ଼ିବା ମାତ୍ରେ ତା କାନରେ
ଶୁଭକ୍ଷଣ ପୁଛିଲେ ।

ଜ୍ୟୋତିଷଙ୍କ ଠାରୁ ସେଦିନ
ଯାତ୍ରା ପ୍ରଶସ୍ତ ଶୁଣି,
ସୈନ୍ୟଗଣ ମଧ୍ୟେ କହିଲେ
ଧୀର ଗମ୍ଭୀର ବାଣୀ ।
ଉଠ ଏହି ଶୁଭ ଲଗ୍ନରେ
ସ୍ମର ପ୍ରଭୁ ଚରଣ,
ନାହିଁ ଅଛି କିଛି ଏଥିରେ
ବିଳମ୍ବର କାରଣ ।
ଏହା କହି ଅଗ୍ରେ କରନ୍ତେ
ନୃପ କାଞ୍ଚି ପ୍ରୟାଣ,
ତାଙ୍କ ପଛେ ଗଲେ ଅସଂଖ୍ୟ
ସୈନ୍ୟ କରଦ ଗଣ ।
ପଦବ୍ରଜେ ନିଜ ନଅରୁ
ବଡ଼ଦେଉଳେ ଗଲେ,
ଭଦ୍ରା ବଳଦେବ ସହିତେ
ପ୍ରଭୁ ପଦେ ନମିଲେ ।
ତୁଳସୀ ମୁଦ୍ରିକା ବାହୁଟି
ପାଟ ମଉଡ଼ ମାଳ,
ଯଥା ସ୍ଥାନେ ପ୍ରଭୁ ଶ୍ରୀଅଙ୍ଗେ
ଦେଲେ ନୃପ ଶେଖର ।
ଜୟ ଅଣେ ବଡ଼ ଦେଉଳେ
ବାନା ବାନ୍ଧିବା ବେଳେ,
କାଞ୍ଚି ରଥ ଧ୍ୱଜ ପଡ଼ନ୍ତ
ଛିଣ୍ଡ ପତାକା ତୁଲେ ।

ଅକ୍ଷମାଳ ଅଣି ରଥରେ
ବାନ୍ଧୁ ବାନ୍ଧୁ ନୃପତି,
ତାଙ୍କ ଗଣପତି ମଦକୁ
ଗଳ ପଡ଼ିଲା ଷେତ ।
ତଳେ ଅନୁକୂଳ ସମ୍ରାଟ
ନିଜ ଖଡ଼୍ଗ ଧରି,
ଅତର୍କିତେ ଖଡ଼୍ଗ ତାଙ୍କୀଣ
ତଳୁ ପଡ଼ିଲା ଝଂଡ଼ ।
ହୁଳହୁଳି ଶଙ୍ଖ ବାହାନ
ନାଦେ ପୂରିଲା ପୃଥ୍ୱୀ,
ତାଙ୍କପତି ଗଡ଼େ ପଡ଼ିଲା
ବୃଥା ତାଦବୋବାଲି ।
ପାଠକଲେ ଜୈନ ମନ୍ତ୍ର
ଦ୍ୱିଜକୁଳ ନାୟକେ,
ବୃଥା ଅସନ୍ତୋଷ ଭଜନ
ହେଲେ ତାଙ୍କୀଣ ଲୋକେ ।
ଯାହାରମ୍ଭେ ଶିରେ ନୃପଙ୍କ
ଛନ୍ଦ ହୋଇଲା ଟେକା,
ତାଙ୍କ ନରପତି ମନରେ
ପଶିଗଲା ଛନକା ।
ନୃପ ବନ୍ଦାପନା ଦୀପରେ
ଘୃତ ବର୍ତ୍ତି ଜଳାଇ,
ତାଙ୍କପତି ହୃଦ ଗ୍ଲାନିଅଁ
ଅତର୍କିତେ ହୋଇଲା ।

ଜଙ୍ଗଲପତିଙ୍କ ପ୍ରୟାଣ
ବେଳେ ବାଜିଲା ଢକ୍କା,
ଭାଙ୍ଗି ଛତ୍ର-ପତ୍ର ନବରେ
ପଡ଼ିଗଲା ଜଲ୍ଧା ।
ହେଲେ ଯୋଗ୍ୟ ନୃପ ରଥରେ
ଘୋଡ଼ା ଯୋଡ଼ିକା ଯୋଡ଼ି,
ଭାଙ୍ଗି ଗଜବାଜି ପଡ଼ିଲେ
ଖାଲି ଅଣ୍ଟୋଇ ତଳି ।
ସିଂହଦ୍ୱାରେ ନମି ନୃପତି
ଧନୁ ଧରବା ବେଳେ,
ଭାଙ୍ଗି ନୃପ ଗୃପ ପଡ଼ିଲା
ଖସି ହାତରୁ ତଳେ ।
ନୟନ ସ୍ଫୁରଣ ବୁଦ୍ଧଙ୍କ
ହୋଇଥିଲା ସେକାଳେ,
ଦକ୍ଷିଣ ବାମରେ ପ୍ରଭେଦ
ମାତ୍ର ଥିଲା·ତହିଁରେ ।
ଯିବାବେଳେ ଭକ୍ତ ଶତ୍ରୁରେ
ଶନ୍ତ୍ରା ଭର ଶ୍ରୀପତି,
ବେଡ଼ା ନିକଟରେ ଦେଖିଲେ
ଦୁର୍ଗାମାଧବ ମୂର୍ତ୍ତି ।
ପ୍ରଭୁ ଅଙ୍କଜମେ ପ୍ରୟାଣ
ଭାଳେ ଶୁଭ ଶକୁନ,
ଦେଖି ନରମଣି ହୋଇଲେ
ଅତି ପ୍ରସନ୍ନ ମନ ।

ଅନୁକୂଳ ବାତ ବହାନ୍ତି
ଶୁଭ ଶକୁନ କୁଳ,
ପ୍ରଦକ୍ଷିଣେ ଉଡ଼ି ହୋଇଲେ
ଦୃଷ୍ଟି ପଥରେ ଠୁଳ ।

— — —

## — ପଞ୍ଚମ ସର୍ଗ —

ମାଣିକ ସକାଳୁ ପଖାଳ
ଭାତ ମୁଠିଏ ଖାଇ,
ଦହି ଦୁଧ ସର ଲବଣୀ
ଗଲା ବିକିବା ପାଇଁ ।
ଦୁଆର ମୁହଁରୁ ନିର୍ଗତ
ହେବା ମାତ୍ରେ ସେଦିନ,
ନେଉଳ ଦେଖିଲା ତେଣୁ ସେ
ହେଲା ପ୍ରସନ୍ନ ମନ ।
ଶଙ୍ଖଚିଲ ଗଛ ଉପରେ
ମାଛ ଖାଇବା ଦେଖି,
ଶକୁନଙ୍କ ଗୋପ ବନିତା
ମନେ ହୋଇଲା ସୁଖୀ ।
ଶବ ଛିବା ପୂର୍ଣ୍ଣ କଳଶ
ବାମ ଭାଗେ ଦେଖିଲା
ହୃଦୟ ମଧ୍ୟରେ ପରମ
ପ୍ରୀତ ବାଲା ଲଭିଲା ।

ବୃଷଭ ସହିତେ ସବତ୍ସା
ଚୋଲୁ ବ୍ରାହ୍ମଣ ମୃଗ,
ଦେଖି ଦକ୍ଷିଣରେ ଗୋପିକା
ହୋଇଥିଲେ ସରାଗ ।
ମନରେ ତାହାର ଅପୂର୍ବ
ଭାବ ହେଲା ଉଦିତ,
ଭାବିଲେ ଭାବନା ମଙ୍ଗଳ
ହେବ ଆଜ ନିଶ୍ଚିତ ।
କ୍ରମେ ଯାଉଁ ଯାଉଁ ବାଟରେ
ବଟଛାୟା କାରେଣି,
ବାଟୋଇମାନଙ୍କ ବନ୍ଦନା
କ୍ଷଣେ ରହିଲେ ଟାକି ।
ଏ ସମୟେ ଦୁଇ ସବାର
କୃଷ୍ଣ ଶୁକ୍ଳ ରୂପରେ,
ଆସି ପ୍ରବେଶିଲେ ସହସା
କଳା ଧଳା ଘୋଡ଼ାରେ ।
ଚଞ୍ଚଳ କମଳ ସଦୃଶ
ଦିଶୁଅଛି ଚରଣ,
ଶାରଦ ଚନ୍ଦ୍ରମା ସୁଷମା
ଜିଣିଅଛି ବଦନ ।
ଅକର୍ଣ୍ଣ ବିଶାନ୍ତ କମଳ
ପତ୍ର ନେତ୍ର ମଞ୍ଜୁଳ,
ସୁଦୀର୍ଘ ନାସିକା ଅଜାନୁ-
ଲମ୍ବୀ ଭୁଜ ଯୁଗଳ ।

ବୋଇଲେ, "ହଇଲେ ମାଉସୀ
ଦଧି ସର ଲବଣୀ,
ଦେଇ ପାରବୁ କି ଅମ୍ଭଙ୍କୁ
ବହୁ ବହୁ ଏକ୍ଷଣି ।"
ଭଣିଲା ମାଣିକା, "ମଣିମା
ଏହା ବେବସା ମୋର
ସବୁ ଅଛି କର ଭୋଜନ
ଇଚ୍ଛାମତେ ତୁମ୍ଭର ।"
ଦୁଇ ଭାଇ ଏହା ଶୁଣିବା
ମାତ୍ରେ ଘୋଡ଼ା ଉପରୁ,
ଡେଇଁ ଓହ୍ଲାଇଲେ ତାହାଙ୍କ
କିଛି ଦୂର ସେଠାରୁ ।
ମାତ୍ର ଶ୍ରମହର ଗୃପୁଡ଼ା
ତାଙ୍କ ପୃଷ୍ଠ ଦେଶରେ,
ଖଟାଇଲେ ବାଗ ଡୋରଡ଼ା
ଥୋଇ ଦେଲେ ସେଠାରେ ।
ବଳଦେବ ଅଗ ବସିଲେ
ଯାଇ ମାଣିକା ଅଗେ,
ଦହି ଦୁଧ ସର ଲବଣୀ
ଗ୍ରାସ କଲେ ସରାଗେ ।
ଜଗନ୍ନାଥ ଭୁଞ୍ଜି କହିଲେ,
"ତୋର ଏ ନବନୀତ,
ଖାଇ ମାଉସୀ ମୁଁ ହୋଇଲି
ଅତି ପରମ ପ୍ରୀତ ।

କେତେ ହେଲ ମୂଲ୍ୟ ଏହାର ’
କହ ଶୀଘ୍ର ମୁଁ ପୁଛୁଛି,
ନ କରବ ଲଜ୍ଜା ବେଭାରେ
ଏହା ମୀତ କହୁଛି ।”
ମାଣିକା ସେଠାରେ ଦଣ୍ଡାୟ-
ମାନ ହୋଇ ବଦନ
ଟୁଲାଇ ଓଢ଼ଣା ଓଢ଼ାଳେ
ବୋଲେ “ମଣିମା ଶୁଣ,
ନ ଜାଣିବା ଲୋକମାନଙ୍କୁ
ସିନା ମୂଲ୍ୟ କହନ୍ତି,
କିବା ମୁଁ ଅଧିକା କହିବି
ଆପଣ ତ ଜାଣନ୍ତି ।”
ହସି ଜଗନ୍ନାଥ ଭାଷିଲେ
ନାଅ ଏହୁ ମୁଦଟି,
କହିଲ ଚତୁରୀ ମଣିମା
ଏହା ଉଚିତ ଟିକା ।
ଆପଣଙ୍କ ହାତ ମୁଦ୍ରିକା
ମୁଁ ବା ନେବି କିପରି ?
ଦେଖିଲେ ଭାବିବେ ସମସ୍ତେ
ଅଟେ ଏ ମାଲ ଚୋରି ।
କେତେ ଦୁଷ୍ଟଲୋକ କହିଣ
କହି ଦେବେ ତୁରିତ,
ତାହା ମୁହଁରେ ବା କିଏ ସେ
ଦେଇ ପାରିବ ହାତ ?

ସେ କହିଲେ—ରାଜା ଅସକ୍ତ
ତାଙ୍କ ବିଜୟ ଅଣେ,
ଏ ମୁଦ ନେଇ ତୁ ସମର୍ପି
ଦେବୁ ତାଙ୍କର ପାଣ ।
କହିବୁ ତୁମ୍ଭର ସବାର
ବୁଲିକଣ ଏ କ୍ଷଣି,
ଗଲେ କଳା ଧଳା ଘୋଡ଼ାରେ
ଅଛେ ଜଙ୍ଗଲମଣି ।
ଜଣଙ୍କର ନାମ କଳଅ
ଅନ୍ୟ ନାମ ଏଥିରେ,
ଖୋଦିତ ରହିଛି ଅପଣ
ପଢ଼ି ଜାଣିବେ ଭଲେ ।
ସାଦରେ ମୋଠାରୁ ଏଠାରେ
ଗ୍ରାସ କଲେ ଲବଣୀ,
ଦହି ବୁଧ ସବ ତା ମୂଲ୍ୟ
ଦେବେ ଅପଣ ଭଣି ।
ତାହାର ସଙ୍କେତ ଏ ମୁଦ
ଦେଇଛନ୍ତି ଅପଣ,
ଗ୍ରହଣ କରନ୍ତୁ ସ୍ୱାମିରେ
ଲକ୍ଷ୍ମୀ ଅଙ୍କ ପ୍ରମାଣ ।
ସମ୍ପତ୍ତି ମୂଲ୍ୟ ନୃପତି
ଦେଇ ତୋତେ ନିଶ୍ଚିତ,
ଗ୍ରହଣ କରିବେ ଏ ମୁଦ
ଅମେ କହୁଛୁଁ ସତ ।

ମାଣିକା ତହିଁରେ ବିଶ୍ୱାସ
କରି ମୁଦ୍ରିକା ନେଲା,
ନୃପ ଆଗମନ ଲକ୍ଷ୍ୟରେ
ତହିଁ ରହି ବସିଲା ।
କିଛି କାଳ ଅନ୍ତେ ନୃପଙ୍କ
ସେନା ତୁମୁଳ ଘୋଷ,
ଶୁଭିଲା ବ୍ୟାପିଲା ତା ଧୂଳି
ଯହିଁ ତହିଁ ବିଶେଷ ।
ଭୀତତ୍ରସ୍ତ ହୋଇ ମାଣିକା
ଯିବା ରହିବା ପାଇଁ,
କ୍ଷମ ନ ହେବାରୁ ଚିନ୍ତିଲା
ତହିଁ ଜଗତସାଇଁ ।
ରହି ରହି ମାଡ଼ି ଆସିଲେ
ରଥ ଗଜ ପଦାତି,
କି କରିବି ଭାବି ତାହାର
ଡରେ ଥରିଲା ଛାତି ।
ଦେଖି ଅବଳାର ବ୍ୟାକୁଳ
ଭାବ ନୃପ ଶେଖର,
ବୋଇଲେ, "ତୁମ୍ଭ ଏ କାହିଁକି
ହେଉଅଛି କାତର ।
କାହା ଅନ୍ୱେଷଣେ କରୁଛ
ଯାଇ ତାକୁ ପଚାର,
ଶୁଣିଣ ମାନବେ ସେ କଥା
ଧାଇଁ ଆସିଲା ଦୂର ।

ବୋଇଲା,"ଭାଇଁଙ୍କ ବ୍ୟାକୁଳ
ହେଲ ଲଳନାମଣି,
ରଜା ଆଜ୍ଞାକ୍ରମେ କହୁନ୍ତି
ବ୍ୟକ୍ତ କର କ୍ଷଣେ ।
ଭଣିଲ ମାଣିକା ନୃପତି
ତହିଁ ଅଚନ୍ତ୍ର ବହ,
ଜଣାଇବ ତାଙ୍କ ସ୍ମୃରେ
ନାହିଁ ନାହିଁ ସନ୍ଦେହ ।
ପାଇ ନରପତି ଆଦେଶ
ଚର ସହସା ତାଙ୍କୁ,
ନିର୍ଭୟେ ଚଳାଇ ଅଣିଲା
କ୍ରମେ ନୃପ ସମ୍ମୁଖ ।
ପ୍ରଭୁ ଦରଶନ ପ୍ରଭାବୁଁ
ଅଶିକ୍ଷିତା ଗୋପିକା,
ସୁଶିକ୍ଷିତା ପରି ଭାଷିଲ
ଗୁଢ଼ ହୃଦୟୁଁ ଦକା ।
"ମଣି ମାନଙ୍କର ପରଶେ
ରସ ଦ୍ରୁବେ ଧାତବ"
ପ୍ରଭୁ ଦରଶନୁ ଗୋପୀର
ଜାତ ହେଲ ବିବେକ ।
ଦେଖିବା ମାତ୍ରକେ ମାଣିକା
ନରମଣି ବଦନ,
ସମ୍ଭ୍ରମେ ପ୍ରଣମି ବୋଇଲା
"ଅଜ୍ଞ ମଣିମା ଶୁଣ" ।

ଶ୍ରୀରାମଙ୍କ ତୁଲ ସବାର
ଭଳା ଧଳା ଘୋଡ଼ାରେ,
ବସି ଯାଉଥିଲେ ତାଙ୍କୁ କ
ମୋତେ ଦେଖି ଏଠାରେ ।
ଦହି ଦୁଧ ସର ଲବଣୀ
ଗ୍ରାସ କଲେ ମୋଠାରୁ,
ଦେବଚନ୍ଦ୍ର ଏହି ମୁଦ୍ରିକା
କାଢ଼ି ନିଜ ହସ୍ତରୁ ।
କହିଲେ, "ନୃପତି ଅମୃତ
ତାଙ୍କୁ ବିଜୟ ପଥେ,
ଅସୁଛନ୍ତି ତୁ ଏ ମୁଦ୍ରିକା
ଦେବୁ ତାଙ୍କ ଶ୍ରୀହସ୍ତେ ।
ପାଇବା ମାତ୍ରକେ ସେ ଏହା
ତୋତେ ସର-ଲବଣୀ
ମୂଲ୍ୟ ଦେବେ, ସେ ଏ ମୁଦ୍ରିକା
ନିଅ ଉଜ୍ଜ୍ୱଳମଣି ।
ଏହା କହି ତାହା ଶ୍ରୀହସ୍ତେ
ଦେବା ମାତ୍ରେ ମାଣିକା,
ଦେଖି ନରବର ପ୍ରଥମେ
ହୋଇଗଲେ ତାଟକା ।
ପଡ଼ି ଉଦ୍ଦିଁ ଜଗନ୍ନାଥଙ୍କ
ନାମ ନୃପ ଶେଖର,
ଅନନ୍ଦ ସାଗର ମଧ୍ୟରେ
ବୁଡ଼ିଗଲେ ସତ୍ୱର ।

ଯୁଦ୍ଧେ ଜୟ ଅଣେ ପ୍ରଭୁଙ୍କ
ଯେଉଁ ମୁଦ୍ରିକା ଦେଇ,
ଅସିଥିଲେ ରାଜା ଚିହ୍ନିଲେ
ତାହି ଅଛଇ ସେହି ।
ବାରମ୍ବାର ସେହି ମୁଦ୍ରିକା
ମାଣିକାର ବଦନ,
ଚୁମ୍ବି ଜଡ଼ବତ ହୋଇଲେ
କ୍ଷଣ କ୍ଷଣକେ ଅନ ।
ନ ସ୍ଫୁରିଲା ବାକ୍ୟ ତାଙ୍କର
ନ ଚଳିଲା ଚରଣ,
ଅନିମେଷ ନେତ୍ରେ କେବଳ
କଲେ ତା ନିରୀକ୍ଷଣ ।
ଦେଖି ଶୁଣି ନରବରଙ୍କ
ଏହି ଭାବ ସାମନ୍ତ,
ନୃପ ମନ୍ତ୍ରୀଗଣ ସେଠାରେ
ହେଲେ ସମୁପଗତ ।
ଚୁମ୍ବି ନୃପଙ୍କରେ ପ୍ରଭୁଙ୍କ
ନାମାଙ୍କିତ ମୁଦ୍ରିକା,
ସବୁରି ମନରେ ସେ କାଳେ
ପଶିଗଲା ଚମକା ।
ଅବାକ୍ ନୃପତି ବଦନ
ଦେଖି ମନ୍ତ୍ରୀ ପ୍ରବୀଣ,
ପଚାରି ବୁଝିଲେ ମାଣିକା
ଠାରୁ ସବୁ ଘଟନ ।

ଅତି ଅନନ୍ଦରେ ସବବେ
ଜଗନ୍ନାଥଙ୍କ ଜୟ,
ଉଚାରଲେ ତାଙ୍କୁ ଶକ୍ରପ୍ରେ
ଚାହୋଇଗଲେ ମର୍ଗପୂ ।
କିଛି କାଳ ଅନ୍ତେ ନୃପତି
ଅତି ଅସୁଷ୍ଟ ବାଣୀ,
ଭଣିଲେ କି ତୁମ୍ଭେ ଦେବତା
ଅବା ନାଗ କୁଲଣୀ ।
କହ କେଉଁଠାରେ ଲୁଚିଲେ
ପ୍ରଭୁ ସର-ଲବଣୀ,
ହେଉ ବର୍ଣ୍ଣ ମୋର ପବନ
ଶୁଣି ତୁମ୍ଭର ବାଣୀ ।
ମାନି ନୃପବର ଆଦେଶ
ବଟମୂଳେ ମାଣିକା,
ଦେଖାଇଲା ପ୍ରଭୁ ଚରଣ
ନ୍ୟାସପୂତ ବାଲୁକା ।
ଦେଖି ତହିଁ ଚକ୍ର କୁଳିଶ
ଧ୍ୱଜ ଶଙ୍ଖ ପଙ୍କଜ,
ଉର୍ଦ୍ଧ୍ୱରେଖା ଚିହ୍ନ ମାନଙ୍କୁ
ଗୁଡ଼ ନୃପତି ଲାଜ ।
ସ୍ନେହୀ ସ୍ନେହଭଜନ ସଙ୍ଗତେ
ଟିଙ୍ଗି ଅଙ୍ଗ ପଗଡ଼,
ଗଡ଼ିଗଲେ ସେହି ଧୂଳିରେ
ଭବ ସାଗରେ ବୁଡ଼ ।

ସ୍ଥାନୁ ସ୍ଥାନାନ୍ତରେ ଗଡ଼ିଲେ
ଦେଖି ପ୍ରଭୁ ଚରଣ,
ନ୍ୟାସ ଅନ୍ୟଭାବ ତାହାଙ୍କ
ହୃଦେ ନ ଲଭିଲ ସ୍ଥାନ ।
କଣ୍ଟକିତ ହେଲା ଶରୀର
ଆନନ୍ଦାଶ୍ରୁ ଗଳିଲା,
ନୟନରୁ ରୋମକୂପରୁ
ସ୍ୱେଦବିନ୍ଦୁ ଝରିଲା ।
ଲକ୍ଷଁ ସ୍ନାନ ସ୍ୱେଦ ସଙ୍ଗତେ
ଧୂଳି ତାଙ୍କ ଅଙ୍ଗରେ
ଆନନ୍ଦାଶ୍ରୁ ଧୋଇ ନିର୍ମଳ
କଲା ଅତି ବେଗରେ ।
ବୋଇଲେ "ବିଧାତା ତୁ ମୋତେ
କିମ୍ପା ନୃପତି କଲୁ ?
ଏ ବାଳିକା ଗଣା ମଧ୍ୟରେ
ତାହିଁ ସ୍ଥାନ ନ ଦେଲୁ ।
ବଡ଼ଭାଗ୍ୟ ତୁମ୍ଭେ ହେ ବଟ
ଅଟ ନିଷ୍ଠୁର ମୋର,
ବିବର୍ଜିନବାଦୀ ଏ ଯେନ
ଅଗ୍ରଁ କରନ୍ତୁ ସ୍ଥିର ।
ଅହେ ପରପୂଜ୍ୟ ପ୍ରଭୁଙ୍କ
ମହାପ୍ରସାଦ ଅନ୍ନ,
ଏ ଭବସାଗର ମଧ୍ୟରୁ
କର ମୋତେ ନିଶଙ୍କ ।

ଯେଉଁ ହାତେ ତୁମ୍ଭେ ପ୍ରଭୁଙ୍କୁ
ଦେଲ ସର-ଲବଣୀ,
ସେଥିରେ ମୋ ଅଙ୍ଗ ସ୍ପରଶ
କର ରମଣୀମଣି ।
ଭବ ତୁମ୍ଭ ନାମ ମନ୍ତ୍ରର
ମୋର କର୍ଣ୍ଣ ପୀୟୂଷ,
ହର କୋଟି ଜନ୍ମ ଅର୍ଜିତ
ପାପ ତାପ ଅଶେଷ ।
ଏହା କହି ନୃପ ପଡ଼ିଲେ
ତାର ଚରଣ ତଳେ
ନବାବ ମାଣିକା କହିଲା
ବନ୍ଧି ଯୋଡ଼ି ହସ୍ତରେ ।
"ଅଜ୍ଞ ମଣିମାଙ୍କ ଅଧୀନା
ମୋର ନାମ ମାଣିକା,
ଏ ନିକଟ ଗ୍ରାମବାସିନୀ
ଅଟେ ମୁହିଁ ଗୋପିକା ।
ଶ୍ରୀଗୁରୁଙ୍କ ପଦ ସେବନ
କୁଳ ବେବସା ମୋର,
ନ ଜାଣି ମଣିମା ଛୁଇଁଲେ
ଦାସୀ ପଦ ଯୁଗଳ ।
ରାଜା ବୋଇଲେ ଗୋ ଶ୍ୱପଚ
ହେଲେ ବିଷ୍ଣୁ ଭକତ,
ଦ୍ୱିଜ କୁଳ ପତି ସେବିତ
ହୁଏ ଏ ଶାସ୍ତ୍ର ମତ ।

ଭରତ ଶ୍ରୀରାମ ଭକତ
ଲକ୍ଷ୍ମଣଙ୍କୁ ପ୍ରଣାମ,
କରଥିଲେ ଏଥି ପ୍ରମାଣ
ବାଲ୍ମୀକି ବଚନ ।
ମୁଁ ଅଟେ ଅଧମ ଧିକ ମୋ
କର୍ମ ମନ୍ଦ ଜୀବନ,
ଯାହାଲାଗି ପ୍ରଭୁ ଲଭିଲେ
କାନ୍ତ ଗମନ ଶ୍ରମ ।
ଲୋଡ଼ା ନାହିଁ ମୋର ରାଜ୍ୟ
ମାନ ସମ୍ମାନ ଯାଉ,
କେବଳ ଅଭୟ ଚରଣ
ତଳେ ମୋ ମନ ରହୁ ।
ଅସ ଗୁରୁଦେବ ଏଠାରୁ
ଫେରିଯିବା ନଗରେ,
ସେବିବା ଶ୍ରୀପଦ ଯୁଗଳ
ଶାନ୍ତ ପୂର୍ଣ୍ଣ ଅନ୍ତରେ ।
ଫେର ମନ୍ତ୍ରୀବର ପଦାତି
ସେନାପତି ସାମନ୍ତ,
ପରଶ୍ରମ ଦେବା ପ୍ରଭୁଙ୍କୁ
ନୁହେ ମୋହର ମତ ।
ଗୁରୁ ବୋଇଲେ, "ହେ ନୃପତି
କୁଳ ମୁକୁଟମଣି
ପ୍ରଭୁଙ୍କ ଆଦେଶ ଲଙ୍ଘନ
ନୁହେ ସାଧୁ ସରଣୀ ।"

"ସ୍ୱଧରମ ପରିପାଳନ
ପ୍ରଭୁ ପଦ ସେବନ",
ଶ୍ରୀମୁଖ ଆଦେଶ ଆପଣ
କରନ୍ତୁ ସ୍ମରଣ ।
ଧର୍ମଯୁଦ୍ଧଠାରୁ କ୍ଷତ୍ରିୟର
ଆନ କିଛି ଅଧିକ,
ନାହିଁ ଧର୍ମ କୃଷ୍ଣ ବଚନ
"ଗୀତା" ଯାର ପ୍ରତୀକ ।
ପ୍ରଭୁଙ୍କ କୁବାଦ ଶ୍ରବଣ
କରି ଯଦି ମଜନ,
ରହନ୍ତି ଆପଣ ତା ହେବ
ସମ୍ମତିର ଲକ୍ଷଣ ।
"ଶକ୍ତିଥିଲେ ପ୍ରତି ବିଧାନ
ଅଟେ ପୁରୁଷପଣ"
ପଳାନ କରନ୍ତୁ ଆପଣ
ଆପଣଙ୍କ ବଚନ ।
ମନ୍ତ୍ରୀ, ସେନାପତି, ସାମନ୍ତ
ନୃପଗଣ ସେକାଳେ,
"ପାଳନୀୟ ଗୁରୁବଚନ"
ବୋଲି ଉଚେ କହିଲେ ।
ପ୍ରକୃତିସ୍ଥ ହେଲେ ନୃପତି
ଗୁରୁ ବଚନ ମାନି,
ବୋଇଲେ, "ଗୁରୁଙ୍କ ଆଦେଶେ
ଉଠ ଉଠ ବାହିନୀ ।

ଧନ୍ୟ ମାଣିକା ମୁଁ କି ତୋତେ
ଦେଇ ଲବଣୀ ମୂଲ୍ୟ,
ଅଷ୍ଟ ଅଇଶ୍ୱର୍ଯ୍ୟ ଯାହାର
ହୋଇ ନପାରେ ତୁଲ୍ୟ ।
ମୁଠିଏ ଖୁଦରେ ସୁଦାମା
ଇନ୍ଦ୍ର ସଙ୍ଗେ ସମାନ,
ହୋଇଥିଲେ ଏହା କହୁଛି
ଭାଗବତ ପୁରାଣ ।
ତଥାପି ପ୍ରଭୁଙ୍କ ଆଦେଶ
ଶିରୋଧାର୍ଯ୍ୟ ମୋହର,
ଏହି ଗ୍ରାମଖଣ୍ଡ ଦେଉଛି
ନେଇ କୃତାର୍ଥ କର ।
"ମାଣିକ ପାଟଣା" ଏହାର
ନାମ ହେବ ଖ୍ୟାତ,
ପ୍ରଭୁଙ୍କ ମହିମା ତୁମ୍ଭର
ନାମ ହେବ ପ୍ରଥିତ ।
ଭଣିଲା ମାଣିକା, "ମୁଁ ଅଜ୍ଞା
ପାଇ ପରଶମଣି,
ହସାଇ ବସିଛି କି ମୂଲ୍ୟ
ନେଇ ହୋଇବି ଧନୀ !
ଗଜଡ଼ ବାପୁଡ଼ି ମୁଁ ଅଟେ
କାହୁଁ ପ୍ରଭୁ ମହିମା,
ଜାଣିବି, ମୂର୍ଖତା ବିଷୟେ
ଯାର ନାହିଁ ତୁଳନା ।

"କିଛି ନ ଜାଣନ୍ତି ଜଗତେ
ବଡ଼ ଅଧମ ଜାତି",
ନାସ୍ତି ସତ୍ୟ ଏ ବଚନ
ଯାର ଜଗତେ ଖ୍ୟାତି ।
ମହିମାଙ୍କ ଆଜ୍ଞା ଅବଜ୍ଞା
ନ କରିବ କଦାପି,
ପୁଣି ଦେଶ ଦେଶାନ୍ତରେ ମୋ
ନାମ ରହିବ ବ୍ୟାପି ।
ସେଥିଲାଗି ମୂର୍ଖ ଗ୍ରାମ ମୁଁ
କରିବଇଁ ଗ୍ରହଣ,
ପତି ମୋ ଦେବତା ତାହାଙ୍କ
ଆଜ୍ଞା ଏଥି ପ୍ରମାଣ ।
ପିତା, ପତି, ପୁତ୍ର ତନିହେଁ
କମେ ବାଲ୍ୟ ଯୌବନ,
ବାର୍ଦ୍ଧକ୍ୟେ ନାରୀର ପ୍ରଭୁ ସେ
କେବେ ନୁହେଁ ସ୍ୱାଧୀନ ।
ଶୁଣି ନୃପବର ତା ଠାରେ
ହେଲେ ପରମ ପ୍ରୀତ,
ସନନ୍ଦ ଦେଲେ ତା ପତିଙ୍କୁ
କହୁ ଏହୁ ଉଦନ୍ତ ।

— – —

—ଷଷ୍ଠ ସର୍ଗ—

ଦିବା ଅବସାନ ସୂଚୁଇ
ବୁଡ଼ିଗଲେ ମିହିର,
ବୁଡ଼ିଗଲା କିବା ଭୂପତିଙ୍କ
ତାଙ୍କ ଯଶ ପଟଳ ।
ଅରକ୍ତ ଦିଶିଲା ଗଗନ,
ନୃପ କ୍ରୋଧ ପ୍ରକଟି,
ବ୍ୟାପିଗଲା କିବା ସହସା
ଦିଗ ଦିଗନ୍ତ ଘୋଟି ।
ଉଦିତ ହୋଇଲା ଚନ୍ଦ୍ରମା
ନୃପ କୀରତି ସଙ୍ଗେ,
ତାଙ୍କ କେବଳ ଅଧିକା
ଦିଶୁଥିଲା ତା ଅଙ୍ଗେ ।
ଯାପି ରଜନୀ ତହିଁ ନୃପତି
ବ୍ରାହ୍ମ୍ୟ ମୁହୂର୍ତ୍ତ ସ୍ନାନ,
ସନ୍ଧ୍ୟା ଦେବାର୍ଚ୍ଚନ ବିଧିବେ
କଲେ ସୁସମାପନ ।
ନିଜ ଯଶ ସମ ମାର୍ତ୍ତଣ୍ଡ
ବିମ୍ବ ଉଦୟ କାଳେ,
ତାଙ୍କ ଅଭିମୁଖେ ପ୍ରୟାଣ
କଲେ ସଦଳବଳେ ।

ଦନ୍ତାବଳ ପାଦ ନିକ୍ଷେପ
ବ୍ୟାକୁଳ ବୃକ୍ଷ ସଂହତି
ଅବନତ ହେଲେ ଦୂରରୁ
ଦେଖି ଉତ୍କଳପତି ।
ଝଡ଼ିଲ ନୃପଙ୍କ ଉପରେ
ନାନାବିଧ ପ୍ରସୂନ,
ବନଦେବୀ କିବା ତାହାଙ୍କୁ
ଦେଖାଇଲେ ସମ୍ମାନ ।
ବୃକ୍ଷ ସଞ୍ଚାଳିତ ଲତାଏ
କଲେ କୁସୁମ ବୃଷ୍ଟି,
କୁଳ-କନ୍ୟା ଲାଜା ଅଞ୍ଜଳି
ଯଥା ନୃପେ ଦିଅନ୍ତି ।
ସ୍ରୋତସ୍ୱତୀ ସ୍ରୋତ କମିଲ
ଶୁଷ୍କ ହୋଇଲା ବାଟ,
ନୃପ ସେବାପର ହୋଇଲେ
କିବା ଜଳ ସମ୍ରାଟ ।
ଥାଟ ଭୟେ ଦୂରୁ ପ୍ରସ୍ଥାଣ
କଲେ ବ୍ୟାଘ୍ର ଭଲ୍ଲୁକ,
ପ୍ରଦକ୍ଷିଣେ ମୃଗେ ଗମିଲେ
ଘୁଞ୍ଚ ହୃଦୟୁଁ ଦର ।
ଗଜପତି ଦେଖି ଉଚିତ
ଭାବି ପଶୁ ସଂହତି,
ମିଶାଇଲେ ତାଙ୍କ ଗହଣେ
ବନ୍ୟ ହସ୍ତୀ କେତୋଟି ।

"ଜୟ ଜଗନ୍ନାଥ ସବଳ
ଦେବ ଉତ୍କଳ ଧବ,
ଜୟ, ସେନା ମଧ୍ୟୁଁ ଉଠିଲା
ଏହି ରବ ଭୈରବ ।
ମହା ଅଡ଼ମ୍ବରେ ସମ୍ରାଟ
ଦେଶ ମଧ୍ୟରେ ଥାଟ,
ରଖିବା ସମ୍ବାଦ କାଞ୍ଚୀଶ
ପାଇ ହୋଇଲେ ରୁଷ୍ଟ ।
ସରଦାରଗଣେ ବୋଇଲେ
ହୋଇ ରକ୍ତ ଲୋଚନ,
"ଉତ୍କଳ ସମ୍ରାଟ ଆସୁଛି
କର ତାକୁ ବାରଣ ।
ଉଠ ସେନାପତି ସଦଳ
ବଳେ ମୋ ଅଜ୍ଞା ମାନ,
କମ୍ପମାନ ହେଉ ମୋ ପଦା-
ଘାତେ ଅଜ ଅବନୀ ।
ରଥ, ଗଜ, ବାଜି ପଦାତି-
ଗଣ ଯାଆନ୍ତୁ ଆଗେ,
ତୁମ୍ଭେମାନେ ଯୁଦ୍ଧ ସଜ୍ଜିତ
ହୋଇ ଚାଲ ମୋ ସଙ୍ଗେ ।
ସେନାପତି କହି "ଯେ ଆଜ୍ଞା"
ଯୁଦ୍ଧ ଉଦ୍ୟମ କଲେ,
ଅନ୍ତଃପୁର ମଧ୍ୟେ ନରେଶ
ଯାଇ ପହଞ୍ଚି ଗଲେ ।

କହିଲେ ରାଣୀଙ୍କି, "କହୁଳ-
ପତି ଯୁଦ୍ଧେ ଅସିଛୁ,
ନ ଶତ୍ରୁର ଡ଼ିରେ, ତୁମ୍ଭେ ମୁଁ
ଏହୁଷଣି ଯାଉଛୁ ।"
ମହିଷୀ ଭାଷିଲେ, "ପରାଣ-
ଧନ ଯୁଦ୍ଧେ ଗମନ,
ନ କରନ୍ତୁ, ଦେଖୁଅଛୁ ମୁଁ
ନାନା ମନ୍ଦଲକ୍ଷଣ ।
ବହୁ ଦନୁଁ ଗଡ଼େ ଜତ୍ପାତ
ହେଉଅଛୁ ଅନେକ,
ଅକାରଣେ ଦଣେ କାହିଁକି
ମୁଖ ତୁମ୍ଭର ଶୁଷ୍କ ।
ଗଜ, ବାଜୀଙ୍କର ନୟନୁ
ବୃଥା ଝରୁଛୁ ବାରି,
ପ୍ରଭୁଙ୍କ ମନ୍ଦିରୁ କାହିଁକି
ଶୁଳ ପଡ଼ିଲା ଝଡ଼ି ?
ଦେଖନ୍ତୁ ଦକ୍ଷିଣ ନୟନ
ସ୍ଫୁରୁଛି ଅଛି ମୋହର,
ସ୍ରବୁଅଛି ଶିବା ମୁଖରୁ
ଭର ଅଗ୍ନି ଉଦ୍‌ଗାର ।
ପରାଭୂତ ହୋଇ ନୃପତି
ଥରେ ପଳାଇଗଲା,
ପ୍ରବଳ ସହାୟ ବନା କି
ପୁଣି ଯୁଦ୍ଧେ ଅସିଲା ।

ଶୁଣିଣ ବାଣସ୍ତ ମୁଖରୁ
ନୃପ ଯୋଡ଼ି ହସ୍ତରେ,
ଜଣାଇଲେ ଜଗନ୍ନାଥଙ୍କୁ
ଅତି ଦୀନ ଭାବରେ ।
ଦୟାମୟ ହୋଇ ତାହାଙ୍କ
ପ୍ରତି ଅତି ସନ୍ତୁଷ୍ଟ,
ସ୍ୱପନେ କହିଲେ, "ତୁମ୍ଭର
ଜୟ ହେବ ନିଶ୍ଚେ ତ ।"
ପୁଣି ବାଟେ ଦେଖି ମାଣିକା
ନାମ ଗୋପ କନ୍ୟକା,
ପ୍ରଭୁଙ୍କୁ ଦେଲା ସେ ଲବଣୀ
ସର ଦହି ଘଟିକା ।
ତୋଷେ ଗ୍ରାମ ତାକୁ ନୃପତି
ଦେଇ ପରମାନନ୍ଦ,
ଲଭି ଅସୁଛନ୍ତି କରିବେ
ତୁମ୍ଭ ସଙ୍ଗରେ ଦ୍ୱନ୍ଦ୍ୱ ।
ପ୍ରଭୁ ଜଗନ୍ନାଥ ଶ୍ରୀ ବଳ-
ଦେବ ଦୁଇ ସବାର
ରୂପେ ରଣକ୍ଷେତ୍ରେ କରିବେ
ତାଙ୍କ ପାଇଁ ସମର ।
ଯାହାଙ୍କ ବାଣକୁ ଡରନ୍ତି
ଦେବାସୁର କିନ୍ନର,
ତାଙ୍କ ସହ ଯୁଦ୍ଧ କରଣେ
କ୍ଷମ ହେବ କି ନର ?

ତାହାଙ୍କ ମୁଖରେ ଜାଣିବା
ନାହିଁ କାହାର ଶକ୍ତି,
ନ ଯାନ୍ତୁ ନ ଯାନ୍ତୁ ଆପଣ
କରୁଅଛୁ ବିନତି ।
ବାରମ୍ବାର ଏହା ଜଣାଇ
ଶେଷେ ପଡ଼ିଚରଣ,
ଧରି ନବାରିଲେ ମନ୍ତ୍ରୀ
ହୋଇ ଅତି ବିଷଣ୍ଣ ।
ନୃପ ବୋଇଲେ, "ଗୋ ସୁନ୍ଦରୀ,
ନୁହ ତୁମ୍ଭେ କାତର,
ପ୍ରିୟ ଅମଙ୍ଗଳ ଆଶଙ୍କା
ହୁଏ ପ୍ରିୟା ଅନ୍ତର ।
ଜଗତ ନିୟମ ଏହା କେ
କରି ପାରିବ ଆନ,
ସେଥିଯୋଗୁଁ ଏହି ଦେଖୁଛ
ନାନା ଅପଶକୁନ ।
ଭାତହାଣ୍ଡି ମଧ୍ୟୁଁ ଗୋଟିଏ
ଚିପା ଯାଅଇ ଥରେ,
ସେଥିରେ ସନ୍ଦେହ ରହିବ
ପୁଣି କାହା ଅନ୍ତରେ ?
ପ୍ରବୃତ୍ତ ହୋଇ ନୃପତି
କାଳି ସକାଳେ ଗଲ,
ଅଜ ପୁଣି ଏତେ ପ୍ରଭାବ
ତାର କାହୁଁ ଆସିଲ ?

ସେହି ଜଗନ୍ନାଥ ସେବାରେ
କଣ ଶୋଇଥିଲେ କି ?
କୁଅ କୁଅ ହୁଏ ଯହିଁରେ
ସତ୍ୟ କି ସେ ଭକତ ।
"ମାନ ନାଥ କଥା ମୋହର
ହିତ କହୁଛ ମୁହିଁ,
ଜନଶ୍ରୁତ ନୁହେଁ ଅମୂଳା
ମୀଛ ବଚନ ଏହି ।"
ନୃପତି କହିଲେ ପଞ୍ଚାସ୍ୟ
ଶଶକର ଅହ୍ୱାନ,
ଶୁଣି କେବେ ଲୁଚି ରହିବା
ଶୁଣିଅଛୁ କି କାନ ।
ଚଣ୍ଡାଳ ପ୍ରଭୁର ସେବାରେ
ହୋଇ ଗର୍ବିତ ଅତି,
ଧରି ସବୁ ପଣି ଅଛୁ ସେ
ଦେଖ ମୋ କ୍ରୋଧମୂର୍ତ୍ତି ।
ଅନ୍ତଃପୁରେ ସଖୀଗଣଙ୍କ
ସହ ଥାଅ ସୁନ୍ଦରୀ,
ଭୀତଚିତ୍ତ ହୋଇ ରହିବ
କେବେ ନାହିଁ ମୁଁ ଡରି ?
ନୀରବ ରହିଲେ ମହିଷୀ
ଚିନ୍ତି ନୃପ ମଙ୍ଗଳ,
ସିଂହଦ୍ୱାରେ ବାଜି ଉଠିଲା
ଯୁଦ୍ଧ ବାଦ୍ୟ ତୁମୁଳ ।

———

## — ସପ୍ତମ ସର୍ଗ —

ପଦ୍ମାବତୀ ଅନ୍ତଃପୁରରେ
ଥିଲେ ଅତି ବିଷର୍ଣ୍ଣେ
ଏ ସମ୍ବାଦ ଯାଇ ପଡ଼ିଲା
କମେ ତାହାଙ୍କ କର୍ଣ୍ଣେ ।
ଅମୃତ ଧାରା କି କିଏ ସେ
ବରଷିଲା କର୍ଣ୍ଣରେ,
ଆନନ୍ଦର ଢେଉ ଖେଳିଲା
କିବା ହୃଦୟ ସରେ ।
ଦୃଷ୍ଟି ଶକତରେ ସମ୍ପୂର୍ଣ୍ଣ
ହୋଇଗଲା ନୟନ,
କ୍ଷମ ହେଲେ ପୂର୍ବ ପରାୟେ
ତାଙ୍କ କର ଚରଣ ।
ଜାଗ୍ରତ ହୋଇଲା ହୃଦୟେ
ପ୍ରିୟ ପ୍ରାପତ ଆଶା,
ଭଲେ ସେ ଅଭୟ ଚରଣ
ଏକମାତ୍ର ଭରସା ।
ପ୍ରଣତ ହୋଇଣ ସେ ପଦେ
ଜଣାଇଲେ ତାହାଙ୍କୁ;
କରୁଣା ସାଗର କମ୍ପିତ
ଦୟାକର ଦାସୀକୁ ।

ତବ ଦାସ ପଦ ସେବାରେ
ସୁଖେ ଯାଉ ଜୀବନ,
ଏତିକ ମାତର ମାଗୁଣି
ଅହେ ବ୍ରଜମୋହନ ।
ଦ୍ରୁପଦୀ ସଭା ମଧ୍ୟରେ
ଚାନ୍ଦିଲେ ଚରଣ,
କୋଟିବସ୍ତ୍ର ଦେଇ ତାଙ୍କର
କଲ ଲଜ୍ଜା ବାରଣ ।
ଅଣ୍ଡି ହୋଇ ଗଜ ଚାନ୍ଦିଲ
ଦୂରେ ତବ ଚରଣ,
ଅଭିମାଣ ତାକୁ ଉଦ୍ଧାର
କରଛନ୍ତି ଆପଣ ।
ଅଭିନାଦ ମୋର କାହିଁକି
କର୍ଣ୍ଣେ ନ ପାଏ ସ୍ଥାନ,
ତୁମ୍ଭ ଅଭିମାଣ ବାନା କି
ହୋଇଗଲା ଭଗନ ।
ଅସି କାଙ୍ଗ୍ରପତି ବସିଲେ
ନିଜ ରଥ ଉପରେ,
ବନ୍ଧାପନା ସାର ମହିଷୀ
ଅନ୍ତଃପୁରେ ଚଳିଲେ ।
ସାରଥି ଘୋଡ଼ାଙ୍କ ପିଠିରେ
ପିଟୁ ପିଟୁ ତା' ହାତୁ,
ଛଳେ ପଡ଼ିଗଲା କୋରଡ଼ା
କଛି ନଥିଲା ହେତୁ ।

ଯାଉଁ ଯାଉଁ ଘୋଡ଼ା ବାଟରେ
ଅଶ୍ରୁପାଡ଼ ପଡ଼ିଲେ,
କୁଅ ଉଡ଼ି ଅସି ବସିଲ
ରଥ ଧ୍ୱଜ ଉପରେ ।
ପ୍ରତିକୂଳ ବାତ ସେଠାରେ
ଅଣି ଉଡ଼ାଇ ଧୂଳି,
ବୁଜାଇଲା ନେତ୍ର ହରଲ
ସେନା ସାମନ୍ତ ଶିଖି ।
ଫର ଫର ହୋଇ ପତାକା
ଉଡ଼ୁଥିଲା ପଛକୁ,
ଫେରିଯାଅ ବୋଲି ଜଣାଉ-
ଥିଲା କିବା ନୃପଙ୍କୁ ।
ତଳେ ଶିବାରବ ଉପରେ
ଶାଗୁଣାଙ୍କ ଚକର,
ଶୁଣି, ଦେଖି ସୈନ୍ୟ ହୋଇଲେ
ଭୟେ ଅତି କାତର ।
ସେହି ବାଦ୍ୟ ନାଦ ଶୁଣିବା-
କ୍ଷଣି ଉତ୍କଳ ବୀରେ,
ବଜାଇଲେ ଶଙ୍ଖ କାହାଳ
ଭେରୀ, ତୁରୀ ସଙ୍ଗରେ ।
ମିଶିଯିବା କ୍ଷଣି ବାଟରେ
କମେ ଦୁଇ ସଇନ,
ଅସ୍ତ୍ର,ଶସ୍ତ୍ର ଟେକି ପ୍ରହାର
କଲ ଏକକୁ ଆନ ।

ଦୁଇ ସେନା ମଧ୍ୟେ ହୋଇଲା
ଘୋରତର ସଂଗ୍ରାମ,
"ଜୟ କାଞ୍ଚିପତି ଭଣିଲେ
ଏକ ତରଫ ସୈନ୍ୟ ।
"ଜୟ ଜଗନ୍ନାଥ ସବଳ
ଦେବ ଉତ୍କଳ ଧବ
ଜୟ" ଅନ୍ୟ ସୈନ୍ୟେ ଶୁଭିଲା
ଏହୁ ରବ ଭୈରବ ।
ପାଦଗ୍ରସ୍ତ ସଙ୍ଗେ ପଦାତି
ରଥୀ ସଙ୍ଗରେ ରଥୀ,
ସବାର ସଙ୍ଗତେ ସବାର
ଯୁଦ୍ଧେ ହୋଇଲେ ମତି ।
ମାହୁନ୍ତ ଅଙ୍କୁଶ, ଆଘାତ
ପାଇ ଗଜକୁ ଗଜ,
ଶୁଣ୍ଡାଦଣ୍ଡ ଟେକି ମାଇଲେ
ଦାନ୍ତ କରଣି ସଜ ।
ଉତ୍କଳ ସମ୍ରାଟ ସଙ୍ଗରେ
ମିଳି କାଞ୍ଚି ନରେଶ,
ରକ୍ତଚକ୍ଷୁ ହୋଇ କହିଲେ
ଛରେ ଅଜିଂସି ଜଣ ।
"ଭାଲି ପଗ୍ର ଡରେ ପଳାଇ-
ଯାଇଥିଲୁ ଅଧମ,
କହାଇ ଆଣିଲୁ ଦଇବ
ଆଜି ତୋହର ଢାମ ।

ଙ୍କ ସହାୟ ପାଇ ପଶିଛୁ
ମୋର ରାଜ୍ୟ ଭିତରେ,
ଦେଖିବା ମୁଁ କିଏ ରଖିବ
ରଣୁ ଭଲ୍ଲ ଏଠାରେ ।”
ପାଳଲଣ୍ଡା ତାଙ୍କ ଢାଳରେ
ଅଗ୍ନି ଲଗାଇ ଛନ୍ତି,
ଶୋଇଛୁ ପବନ ମୁହଁରେ
ଭ୍ରାନ୍ତି ତୋହର ନାହିଁ ।
ନ ଜାଣି ତୁ ବସ୍ତ ମନ୍ତ୍ରର
କାଳ ସର୍ପ ଗୃଳନ,
କଲୁ ଦଶିଲଣି ନିଷ୍ଟୟ
ତତେ ଯମ ସଦନ ।
ଅରେ ଶୃଗାଳ ତୁ ପଞ୍ଚାସ୍ୟ
ସଙ୍ଗେ କଲୁ ବିଦ୍ରୋହ,
ତୁଟିଯିବ ଏହି କ୍ଷଣିରେ
ତୋର ସବୁ ବ୍ୟାମୋହ ।
କ୍ଷୁଦ୍ର ଇନ୍ଧନରେ ବନାଗ୍ନି
ସଙ୍ଗେ ବିରୋଧ କର,
ଭାବନ୍ତୁ ରହିବୁ ଅଟଳ
ନିଷ୍ଟେ ଦେବ ସେ ଜାଳି ।
ନାହିଁ ନାହିଁ ପରିଜାଣରେ
ସତ୍ୟ କହୁଛୁ ଅଜ,
ତୋପାଛୁଦେବ ଏହିକ୍ଷଣିରେ
ତୋର ଶମନ ପାଞ୍ଜି ।

ଏ ବିରୋଧ ବୃକ୍ଷେ ଫଳିବ
ଯେଉଁ ବିଷମ ଫଳ,
ସେଥିରେ ସର୍ବସୈନ୍ୟେ ହୋଇବୁ
ଛିନ୍ନ ଜନ୍ମେ ନିର୍ମୂଳ ।
ନ କର ତୁ ବହ୍ନି ସଙ୍ଗତେ
ତୁଳକରେ ଅପ୍ରୀତି,
ଦେଖ ସାବଧାନ ! କହୁଛି
ରହ ରହ ସମ୍ପ୍ରତି ।
ଜଳିଲ ମଘବା କହିଲେ,
"ଅରେ ନର ଅଧମ,
ନ କହନ୍ତି ବଡ଼ପଣିଆଁ
ମହା ପୁରୁଷଗଣ ।
ବଳ ପରାକ୍ରମ କରମେ
ଦେଖିବ ତୋ ଜଗତ,
ଏତେବେଳଯାଏ କାହିଁ ହେଉଛୁ
ଖାଲି କଥାରେ ସ୍ଫୀତ ।
ଏହା କହୁ କହୁ ବର୍ଷିଲା
ସୁର ପକ୍ଷର ବଣ,
ଫୁଟିଲା ଜଳଦ ମଧ୍ୟରେ
କୋଟି କୋଟି କମାଣ ।
ବହୁ ଦିନ ବ୍ୟାପି ହୋଇଲା
ଅତି ଭୀଷଣ ଯୁଦ୍ଧ,
ସୁର ନରବର ହୋଇଲେ
ତହିଁ ପରମ କ୍ରୁଦ୍ଧ ।

ବାଣୀଶ କଣ୍ଠିତ ଦୁର୍ବଳ
ଦେଖି ନରପତିଙ୍କି,
ଅଟ୍ଟହାସ କରି କହିଲେ
ନିଜ ଖଡ଼ଗ ଟେକି ।
କହୁଥିଲେ ପରା ତୋ ପ୍ରଭୁ
"ଜୟ ହେବ ନିଶ୍ଚିତ,
ତୀକ୍ଷ୍ଣ ଧାର ଅସି ଦେଖି ମୋ
ହୋଇଗଲେ କି ଭୀତ ।
ସହାୟ କେବଳ ମାତର
ବାହୁ ବଳ ମୋହର,
ଏକ ମାତ୍ର ପ୍ରଭୁ ଅଟଇ
ନିଜ ଖଡ଼ଗ ଧାର ।
ତୋର ରକ୍ତ ସ୍ରୋତେ କ୍ଷାଳନ
କରି ତାର କଳଙ୍କ,
ଲଭିବି ଅପାର ଆନନ୍ଦ
ଦେଖ ଆଜ ନିଃଶଙ୍କ ।
ଅରେ ଭସ୍ମାଙ୍କୁର, ସ୍ମରଣ
କର ପ୍ରଭୁ ଚରଣ,
କରୁଛୁ ତୋ ଶିରଚ୍ଛେଦନ
ମୋର ଅସି ଏକ୍ଷଣ ।
ଏହି ବାଣୀ ଶୁଣି ଉତ୍କଳ-
ମଣି ଶ୍ରୀ ଚକ୍ରପାଣି,
ଚରଣ ଯୁଗଳ ସ୍ମରଣ
କରି ହେଲେ ମଉନୀ ।

ଜାଣି ନୃପ ଭାବ ଭକତ-
ବନ୍ଧୁ ଶ୍ରୀ ଜଗନ୍ନାଥ ,
ଅଦେଖିଲେ ନିଜ ଚକ୍ରକୁ
ରଣ ଉତ୍କଳନାଥ ।
ନ କରନ୍ତୁ ଶତ୍ରୁ ସଂହାର
କହୁଅଛୁ କଦାପି,
ସସୈନ୍ୟ ରକ୍ଷିବୁ କେବଳ
ନରବରଙ୍କୁ ତାଙ୍କ ।
ଅଶ୍ୱ ମାନ ଚକ୍ର ରହିଲ
ଦୁଇ ସୈନ୍ୟ ଭିଡ଼ାଲେ
ଶତ୍ରୁ ଅସ୍ତ୍ର ଶସ୍ତ୍ର ପଡ଼ିଲା
ଖାଲି ତାହା ଉପରେ ।
"ଚକ୍ର ଆଡ଼ୁଆଲେ ରହିବା"
ଜନଶ୍ରୁତି ରୂପରେ,
ସେହୁ ଧନୁଁ ବ୍ୟାପି ରହିଛି
ସ୍ଥାନେ ସ୍ଥାନେ ଜଳୁଛି ।
ଖଡ୍ଗ ହସ୍ତ ଦୁଇ ସବାର
କଳା ଧଳା ଘୋଡ଼ାରେ,
ରଣେ ଅବତୀର୍ଣ୍ଣ ହୋଇଲେ
କ୍ଷଣ ମାତ୍ରକ ପରେ ।
ବିଦ୍ୟୁତ ଗତିରେ କରିବା
ରଣ ଯେବେ ସଞ୍ଚାର,
ଦେଖି ଥରିଗଲେ ଭୟରେ
ଦେବାସୁର କିନ୍ନର ।

ଅନ୍ତରୀକ୍ଷ ହେଲା ସେକ୍ଷଣି
ଦେବଯାନ ମଣ୍ଡିତ,
ସସାଗର ଧରା ଉପରେ
ହୋଇଗଲା କମ୍ପିତ ।
ଦେବ ଦୁନ୍ଦୁଭିର ନିର୍ଘୋଷ
ଶୁଭିଥିଲା ସେ କାଳେ,
ଅବନତ ହେଲା ଅବନୀ
ଶେଷ ଶିର ସଙ୍ଗରେ ।
ଗଣ୍ଡା ଗଣ୍ଡା ମୁଣ୍ଡ କଟିଲା
ଚଣ୍ଡ ବେଗରେ ଉଡ଼ି,
ଲକ୍ଷ ଲକ୍ଷ ମଡ଼ା ପଡ଼ିଲେ
ରଣଭୂମିରେ ଶୋଇ ।
କଟିଗଲା ହାତ କାହାର
ଗୋଡ଼ ଛିଣ୍ଡିଲା କା'ର,
ଓହଳିଲା ଅନ୍ତ୍ରଗୁଳା
ହେଲେ କେ ଦ ଦ ଫାଳ ।
ରଥୀ ସାରଥିଙ୍କ ସଙ୍ଗତେ
ଛିଣ୍ଡିବାରୁ କବର,
ମଡ଼ାଙ୍କ ଉପରେ ପଡ଼ିଲା
ରଥ ଥରକୁ ଥର ।
ପାର୍ଷ୍ଣିଗ୍ରାହ, ଗଜ, ମାହୁନ୍ତ
ସଙ୍ଗେ ଗଜାରୋହୀଏ,
ପଡ଼ିଗଲେ ରଣ ପ୍ରାଙ୍ଗଣ
ମଧ୍ୟେ କେଉଁଠି କିଏ ।

ଚୋରଡ଼ା ହସ୍ତରେ ସବାର
ଗଣ୍ଟି ଧାଉଁଛି ଧାଡ଼ି,
ଛିଣ୍ଡ଼ ଗଡ଼ିଗଲେ ଭୂମିରେ
ଘୋଡ଼ା ସଙ୍ଗତେ ମିଳି ।
ହାତ ଗୋଡ଼ ଗଣ୍ଡେ ମୁଣ୍ଡରେ
ପୂରିଗଲା ଅବନୀ,
ଶୁଭିଲା ମାଂସାଶୀ ଜୀବଙ୍କ
ଖାଲି ଶବଦ ଧ୍ୱନି ।
ମଡ଼ା ଉପରେ ମଡ଼ା ପଡ଼ିଲେ,
କେହୁ ନୋହିଲେ ଛିଡ଼ା,
କେବଳ କବନ୍ଧ ନାଚିଲେ
ହୋଇ ଭଡ଼ାକୁ ଭଡ଼ା ।
କୁଣପ ଶବଦ କୁହାଟ,
ଗୀତ ଡାକର ନାଦ,
ଖାଲି ହେଉଥିଲା ସେଠାରେ
କାହିଁ ନ ଥିଲା ବାଦ ।
ଦନ୍ତାବଳ ଭଟ ଘୋଟକ
ଗ୍ରାହ, ନକ୍ର, ମକର,
ରାଜମୁଖ ପଦ୍ମ, ରକ୍ତରୁ
ଜଳ, ବାଳ ଶୈବାଳ ।
ଜଙ୍ଘାସ୍ଥି କ୍ଷୁଦ୍ର, ନଖ ବରାଟ,
ମେଦ କର୍ଦ୍ଦମ ସ୍ଥଳ,
ଗଜ ମୁଣ୍ଡ କୂର୍ମ ମଣ୍ଡିତ
ହେଲା ରଣ ସରତ ।

ସମୁତ୍ଥିତ ଧୂଳି ପଟଳ
ଛିନ୍ନ ମୂଳ ରକ୍ତରେ,
ହୋଇବାରୁ ବ୍ୟାପି ବହିଲେ
ଖାଲ ନଦୀ ପ୍ରଣ୍ଡରେ ।
ପରଶୁ, ଭୁଶୁଣ୍ଡି, ତୋମର
ଶକ୍ତି, ବାଣ, କୃପାଣ,
ବରଷିଲେ ତାଙ୍କ ଉପରେ
ସର୍ବସୈନ୍ୟରେ ନରେଶ ।
ଗତ ଲାଘବରେ ତାଙ୍କର
ନ ବାଜିଲେ ଗୋଟିଏ,
ଦେହେ ଯାଇ ରକ୍ତେ ପଡ଼ିଲେ
ଖାଲି କେଉଁଠି କିଏ ।
ତାହା ଦେଖି ନରପତିଙ୍କ
ମୁଖ ହେଲା ମଳିନ,
ତବେ ରଣକ୍ଷେତ୍ରୁ ଗମିଲେ
ଅବଶିଷ୍ଟ ସଇନ ।
ଭୀତ ସ... ହୋଇ ନୃପତି
ଯହିଁ ଦେଖିଲେ ତହିଁ,
ସେ ବୀର ସବାର ରୂପରେ
ଦୃଶ୍ଟ ହୋଇଛନ୍ତି ମହୀ ।
ରଣାଙ୍ଗନ ମଧ୍ୟୁଁ ପଳାଇ
ଯାଆନ୍ତେ ମହା ଭୟରେ,
ବନ୍ଦୀକଲେ ତାଙ୍କୁ ଜଙ୍ଗଲ-
ମତ ଅତି ବେଗରେ ।

ସଦଳ ବଳରେ ପଶିଲେ
ଯାଇ କାଞ୍ଚି ଗଡ଼ରେ,
ସ୍ତ୍ରୀ-ବାଳକମୟ ଜଗତ
ହୋଇଥିଲା ସେଠାରେ ।
ପଳାଇଲେ ଭୟେ ସୈନ୍ୟଙ୍କୁ
ଦେଖି ଅବଳାକୁଳ,
ଭୟତ୍ରସ୍ତ ମୃଗୀ ପରାଏ
ହୋଇ ଅତି ବିକଳ ।
ପୁତ୍ର ଦୁହିତାଙ୍କୁ ଫୋପାଡ଼ି
ଦେଇ ସ୍ଥଇକା ଭର,
ନିଜ ପଦାଘାତେ ଚମକି
ଭଲେ ଉଠେ ବୋବାଳି ।
ପିତା ପତି, ପୁତ୍ର ବିଚ୍ଛେଦ-
ବହ୍ନି ତାଙ୍କ ଅନ୍ତରେ
ଜଳୁଥିଲା ଉଠେ ତା ଧାସ
ବାଜୁଥିଲା କପାଳେ ।
ତେଣୁ ଝରୁଥିଲା ନୟନ
ଛିଦ୍ରେ ବାଷ୍ପ ଲୋତକ.
ଖର ଶ୍ୱାସ ବ୍ୟାଜେ ନାସିକା-
ପୁଟୁଁ ତାତ ଅନେକ ।
ଅହା ପ୍ରାଣନାଥ, ହା ସୁତ,
ତାତ, ଭ୍ରାତ, ଦେବର,
କହୁ ପଡ଼ି ଗଡ଼ି ପଳାନ୍ତି-
ଥିଲେ ଅତି ଚଞ୍ଚଳ ।

ଛିନ୍ନ କେଶପାଶ, ବସନ,
ଭୂଷଣରେ ବିହୀନ
ହୋଇ, ହାହାକାର ରବରେ
କରୁଥିଲେ ରୋଦନ ।
ଯୂଥପତି ହୀନ କରିଣୀ
ପରି ରମଣୀଗଣ,
ଅର୍ତ୍ତିନାଦ ରୋଳେ କମ୍ପାଇ
ଦେଉଥିଲେ ଗଗନ ।
ପଦ୍ମାବତୀ ସେହି ଭିତରେ
ହୋଇଥିଲେ ବିଲୀନ,
ଧରିବାକୁ ତାଙ୍କୁ ଗୋଡ଼ାଉ-
ଥିଲେ ଜଙ୍ଗଲ-ସୈନ୍ୟ ।
ଦେବୀଙ୍କ ମଧ୍ୟରେ ପାର୍ବତୀ
ଯଥା ଶୋଭା ପାଆନ୍ତି,
ତାରାଗଣ ମଧ୍ୟେ ଉଜ୍ଜ୍ୱଳ
ଯଥା ସୁଧାଂଶୁ କାନ୍ତି ।
ଅପସରାପନ୍ତି ମଧ୍ୟରେ
ଯଥା ଶଚୀ ସୁନ୍ଦରୀ,
କମଳିନୀ ବନ ଭିତରେ
ଯଥା ଦଶନ୍ତି ଶିରୀ ।
ପାଣ୍ଡୁର ମେଘରେ ଝଲକି
ଉଠେ ଯଥା ବିଜୁଳି,
ପଦ୍ମାବତୀ ତଥା ଦିଶିଲେ
ନୟନରେ ସବୁରି ।

ତାଙ୍କ ତେଜଃପୁଞ୍ଜ ଦେଖିବା
ମାତ୍ରେ ସଇନଗଣ,
ଅଚେତ ହୋଇ ରହିଲେ
ହୋଇ କରିବା ଜ୍ଞାନ ।
ସ୍ତମ୍ଭିତ ହୋଇ ସେମାନେ
ରହିବାରୁ ଏବତ,
ନିଜେ ନୃପ ଯାଇ ବାନ୍ଧିଲେ
ପଦ୍ମାବତୀଙ୍କ ହସ୍ତ ।
ପ୍ରଣୟିନୀ କର ପରଶୁ
ନୃପ ହସ୍ତୁଁ ଶୃଙ୍ଖଳା,
ଖସି ବାରମ୍ବାର ସେକାଳେ
ତାଙ୍କୁ ବ୍ୟାକୁଳ କଲା ।
ଉଭୟ ଶରୀରେ ବେପଥୁ
ଜନ୍ମିବାରୁ ଉଭୟ
ହସ୍ତ ହୋଇଗଲା ବନ୍ଧନେ
ଅତିଶୟ ଅଥୟ ।
ବୁଦ୍ଧିଙ୍କର କର ପରଶ
ହେବା ମାତ୍ରକେ ସ୍ୱେଦ,
ଉଦ୍‌ଗମେ ଶୃଙ୍ଖଳା ହୋଇଲା
ବୁଇ ପାଶରୁ ଆର୍ଦ୍ର ।
ଦେଖି ଗୁରୁ ଚକ୍ଷୁ ମିଳନ
ଘନ ଘନ ମଦନ,
ପଞ୍ଚ ବାଣାଘାତେ ଉଭୟ
ହୃଦ କଲା ଭେଦନ ।

ରୋମାଞ୍ଚିତ ହୁଇ ଶରୀର
ହୋଇଗଲା କଣ୍ଟକିତ,
ଉଭୟ ମନରେ ଜନ୍ମିଲା
ପରସ୍ପର ପୀରତି ।
ସ୍ନେହ ପାଶେ ଦୃଢ଼ ବନ୍ଧନ
ପଦ୍ମାବତୀ ସେକାଳେ,
ଭାବଥିଲେ ନିଜ ଅନ୍ତରେ
ନୃପ କର ସ୍ପର୍ଶରେ ।
ଶୃଙ୍ଖଳା ବନ୍ଧନେ ଅବଦ୍ଧ
ହେଲେ ଯୁଦ୍ଧା ତାଙ୍କର,
ସ୍ଫୁରୁଥିଲା ବାମ ନୟନ
କର ଦକ୍ଷିଣେ ତର ।
ପ୍ରତିଜ୍ଞା ବଳରେ ନୃପତି
ଅଣି ପଦ୍ମାବତୀଙ୍କ,
ବନ୍ଦୀ କର ରଥେ କହିଲେ
ତାଙ୍କ ପିତାଙ୍କୁ ଡାକ ।
"ସ୍ମରୁଛ କି ? ପ୍ରଭୁ ଅଦେଶ
ନ ଜାଣ ସେ ମହିମା,
ତାଙ୍କ ଦ୍ରୋହକାରୀ ଲୋକର
ପରିଣାମ ଏ ସୀମା ।"
"ଦେଖ ସେନାପତି କେଉଁଠି
ବନ୍ଦୀ ଅଛି ମୋ ଚର,
ଯାଅ ବନ୍ଦଶାଳା ତାହାକୁ
ଶୀଘ୍ର କର ଉଦ୍ଧାର ।

ଦେଖି ଏଣି ଅଗେ ଜଗତ
ରଖ ଆପଣା ମନ,
"ଉତ୍କଳ ସନ୍ତାନ ପ୍ରତଙ୍କୁ
ଭେଦ୍ଭେ ନ ହୁଏ ଆନ ।"
ଅନୁଗ୍ରହ କର ସସୈନ୍ୟେ
ଗୁରୁଦେବ ଯାଅନ୍ତୁ,
ତାଙ୍କ ଇଷ୍ଟଦେବେ ଆଣି ସେ
ରଥ ମଧ୍ୟେ ରଖନ୍ତୁ ।
ଯାଇ ଦୂତମାନରେ ଅଣନ୍ତେ
ଗୁରୁ ଗଣପତିଙ୍କେ,
ପ୍ରଣମି କହିଲେ ସେ କାଳେ
ନରପତି ସନ୍ଦେଶ ।
"ପ୍ରଭୁ ଗଜଣଙ୍କ ମଧ୍ୟରେ
ନ ରଖିବ ପ୍ରଭେଦ,
ବ୍ୟାପକ ଅନନ୍ତ ପରମ-
ବ୍ରହ୍ମ କହୁଛି ବେଦ ।"
ଏ ସମୟେ ବନ୍ଦୀ ରୂପରେ
ତର ଆସିବା ଦେଖି,
ଅତି ଆନନ୍ଦରେ ନୃପତି
ତାଙ୍କୁ ଅଣିଲେ ଡାକି ।
ବେଣ୍ଡ ହାତେ ସେତୁ କରନ୍ତେ
ପଦତଳେ ପ୍ରଣାମ,
ଖୋଲିଦେଲେ ନିଜ ଶୀରରେ
ତାହା ନୃପ ଲଲାମ ।

ପଗଡ଼ି ଅଣି ତା ମୁଣ୍ଡରେ
ଦେଲେ ନିଜେ ଗୁଡ଼ାଇ,
"ପାଠ ସରଦାର ହୋଇଲୁ
ଆଜଠାରୁ ତୁ" କହି ।
ସିଂହନାଦ ଜୟଧ୍ୱନିରେ
ଧନ୍ୟ ଧନ୍ୟ ଶବଦ,
ପୂରିଲା କର୍ଣ୍ଣ କୁହର
ଜନମାଇଲା ମୋଦ ।
ନରବର ଗୋପୀନାଥଙ୍କ
କମନୀୟ ମୂରତି,
ଦେଖି ନମି ତାଙ୍କୁ ଅଣିଲେ
ହୋଇ ପ୍ରସନ୍ନ ମତି ।
ଆଜ୍ଞା ଦେଲେ ସରଦାରଙ୍କୁ
ମୈତ୍ରପ୍ରମାଣ ଜାଣିଣେ,
ଖୋଲି ଗଡ଼ ଦଅ ଯାଆନ୍ତୁ
ବନ୍ଧୁ ଅପଣା ବାସେ ।
ସରଦାର ଖୋଲି କହିଲା,
"ଦେଖ ଉଦ୍ଧାରକଙ୍କୁ,
କହୁଥିଲେ ପରା ଆପଣ
ଥରେ ଦେଖିବି ତାଙ୍କୁ ।"
ମନେ ଅଛନ୍ତି କି ଜାଣିଣ
'ସଖୀ ଗୃହ ଭୂଷଣ,
ଜଙ୍ଗଲର ଦୂତ ସମକ୍ଷେ
କରିଥିଲୁ ସ୍ମରଣ ।"

ଲଜ୍ଜାଭରେ ମୁଖ ଅନତ
ଭବ ଭାଗିଣ ହାସେ,
ପ୍ରଣତ ପସ୍ୱେ ରହିଲେ
କ୍ଷମ ନ ହେଲେ ଭାଷେ ।
ଜୟ ସ୍ତମ୍ଭ ପୋତି ସେଠାରେ
ଅତି ଆନନ୍ଦ ମନେ,
ସ୍ମରି ପ୍ରଭୁପଦ ଫେରିଲେ
ନରପତି ସସୈନ୍ୟେ ।
ଗୁରୁ ବୋଇଲେ, "ହେ ନୃପତି
ଅକ୍ଷରକ କୀରତି,
ଦାନ ଚିରସ୍ଥାୟୀ ତାହାର
ସମ ଅନେ ନୁହନ୍ତି ।
ଶ୍ରୀ ଜଗନ୍ନାଥଙ୍କ କୃପାରୁ
ଜୟଲକ୍ଷ୍ମୀ ପ୍ରସନ୍ନ,
ଭରୁଚନ୍ଦ୍ର ପୁଣି ଆପଣ
ଶୁଭ ପ୍ରତ୍ୟାବର୍ତ୍ତନ ।
ଅଭ୍ୟୁଦୟେ ଦାନ ଅଟଇ
ଶାସ୍ତ୍ରେ ରାଜଧରମ,
ଶୁଭଗଡ଼େ ଅଙ୍କ ସ୍ଥାପନ
ଭବ ଏଠାରେ ଗ୍ରାମ ।
ଗୁରୁ ଅଜ୍ଞା କମେ ନୃପତି
ବାଟେ ଫେରିବା ବେଳେ,
"ବିଜୟ ବାହୁଡ଼ା" ନାମରେ
ଗ୍ରାମ ବସାଇ ଦେଲେ ।

କର୍ଣ୍ଣସଙ୍କୋଚରେ ଏବେ ଯା
ବେଜବାଡ଼ା ନାମରେ,
ଅବସ୍ଥିତ ଏବେ ହୋଇଛି
କୃଷ୍ଣାନଦୀର ତୀରେ ।
ବାଟେ ଅସୁ ଅସୁ ନୃପଙ୍କୁ
ଥାଟ ସଙ୍ଗେ ସମ୍ମାନ,
ନିଜ ନିଜ ରାଜ୍ୟେ ଦେଖାଇ
ଥିଲେ କରଦ ଗଣ ।
ଶୃଙ୍ଖ ପୋତି ପଥ ପ୍ରାନ୍ତରେ
ଥମ୍ଭ ତୋରଣମାଳ,
ଲମ୍ବାଇଲେ ଫୁଲ ସଙ୍ଗତେ
କରି ଅତି ମଞ୍ଜୁଳ ।
ପୋତି ରମ୍ଭାସ୍ତମ୍ଭ ସ୍ଥାପିଲେ
ପୂର୍ଣ୍ଣ କଳଶମାନ,
ନାନା ବଇରଖ ଧ୍ୱଜଣ୍ଡ
କରାଇଲେ ଧାରଣ ।
ନଗ୍ନପାଦେ ଯୋଡ଼ହସ୍ତରେ
ବାଟ ନିକଟେ ରହୁ,
ପ୍ରଣମିଲେ ଭେଟି ଅରପି
ନିଜ ନାମ ଜଣାଇ ।
ହୁଳହୁଳି ଦେଲେ ରମଣୀ-
କୁଳ ମିଳି ସର୍ବତ୍ର,
ଘାଟେ ଗାଜଥିଲେ ଅଗରେ
ତାଙ୍କ କୀର୍ତ୍ତି ପବିତ୍ର ।

ମହା ଅଡ଼ମ୍ବରେ ପୁଷ୍ପରେ
ପ୍ରବେଶିଲେ ନୃପତି,
ବଡ଼ ଦେଉଳରେ ପ୍ରଣାମ
କଲେ ଅଗ ଶ୍ରୀପତି ।
କରି ସଭା ତହିଁ କହିଲେ
ଧୀର ଗମ୍ଭୀର ସ୍ୱରେ,
"ପ୍ରତିଜ୍ଞାବଚନ ମୋହର
ଶୁଣିଅଛ ସକଳେ ।
ସଭାମଧ୍ୟେ ପଦ୍ମାବତୀଙ୍କ
ଅଙ୍କ ଚଣ୍ଡାଳେ ଦାନ,
କରିବି ପ୍ରତିଜ୍ଞା ପାଳନ
କୁଳର ଧରମ ।"
ନୃପ ବାଣୀ ଶୁଣି ସରବେ
ହେଲେ ବ୍ୟାକୁଳ ମନ,
ନ ସ୍ଫୁରିଲା କାହା ମୁଖରୁ
କିଛି ପ୍ରତିବଚନ ।
ଶାନ୍ତି ଛଦ୍ମପଦ ଜଗାର
ତାଙ୍କ ପବିତ୍ର ନାମ,
ଖରସ୍ୱାସ ଛେକ ମଝନେ
କଲେ ତାହା କୀର୍ତ୍ତନ
ସବୁର ବଦନ ସେକାଳେ
ହୋଇଗଲା ମଳିନ,
ପଦ୍ମାବତୀଙ୍କର ଦେହରୁ
ହେଲା ସ୍ୱେଦ କ୍ଷରଣ ।

ପ୍ରବାହିତ ହେଲା ନୟନୁଁ
ତାଙ୍କ ଲୋତକ ଧାର
ନାସା, କର୍ଣ୍ଣ, କର, ଚରଣ
କଣ୍ଠ ହୋଇଲା ଜଡ଼ ।
କେବଳ ହୃଦୟ ମଧ୍ୟରେ
ପ୍ରଭୁପଦ ଯୁଗଳ,
କରୁଥିଲେ ଧ୍ୟାନ ସେକାଳେ
ହୋଇ ଅତି ବ୍ୟାକୁଳ ।
ଜାଣି ତାଙ୍କ ଦୁଃଖ, ପ୍ରବୀଣ
ମନ୍ତ୍ରୀ ରାଜା ଛାମୁରେ,
ଜଣାଇଲେ ଦୀନ ଭାବରେ
ରହ ଯୋଡ଼ ହସ୍ତରେ ।
ସମୁଚିତ ଦେଖି ଚଣ୍ଡାଳେ
କରବା ମୁଁ ପ୍ରଦାନ,
ପାଇଲେ ଛାମୁଙ୍କ ଆଦେଶ
ପ୍ରଭୁ ଅଜ୍ଞା ପ୍ରମାଣ ।
ହେଲେ ନରବର ସମ୍ମତ
ବନ୍ଦୀ ଭାବରେ ତାଙ୍କୁ,
ରଖାଇଲେ ବାରବାଟିରେ
ପାନ ଦେଖି ଦେବାକୁ ।
ସେହିଠାରେ ଗୋପୀନାଥଙ୍କୁ
ବସାଇଲେ କ୍ଷିତୀଶ,
କାଳେ ପ୍ରଭୁ ଅପି ହୋଇଲେ
ସତ୍ୟବାଦୀର ବଶ ।

ପଦ୍ମାବତୀ ବନ୍ଦ-ଗୃହରେ
ରହୁ ଦବା ରଜନୀ
କେବଳ ଚିନ୍ତିଲେ ପ୍ରଭୁଙ୍କ
ପଦ-ପଙ୍କଜ ବେନି ।
ବିଜୟେ ଫେରନ୍ତେ ଉତ୍କଳ-
ପତି, କାଞ୍ଚି ନରେଶ
ଅନୁତାପାନଳ ଜ୍ୱାଳାରେ
ଦଗ୍ଧ ହେଲେ ବିଶେଷ ।
ଭାବିଲେ, "ମୁଁ ଅଟେ ଅଧମ
ନାହିଁ ମୋହର ଜ୍ଞାନ,
ହରାଇଲି ହାତେ ବଞ୍ଚିତା-
ସହ ଅପଣା ମାନ" ।
ରଣକ୍ଷେତ୍ରେ ଅତି ବ୍ୟାକୁଳେ
କରିଥିଲେ ଅସ୍ଥାନ,
ପିତୃ ଗନ୍ଧର୍ବ ଚିନ୍ତନେ
ଥିଲେ ନିଯୋଜି ମନ ।
ଭାବିଲେ ମୋ ପରି ଅଧମ
ଜନ୍ମିବାରୁ ସନ୍ତାନ,
ମୋ ବଂଶ କୀରତି କେତନ
ହୋଇଗଲା ମଳିନ ।
ଚିରନ୍ତନ ନିଜ ବଂଶର
'ମାନ ଧନ" ଉପାଧି
ଦହୁଛି ସଦା ମୋ ଅନ୍ତର
ହୋଇ ମାନସ ବ୍ୟାଧି ।

ନିଜ କୀର୍ତ୍ତି ଶୁଭ୍ର ବଂଶରେ
ଏହୁ ଅକୀର୍ତ୍ତି ଲେଖ
ଦେଖି, ପିତା ପିତାମହଙ୍କ
ମନେ ଜନ୍ମିବ ଦୁଃଖ ।
କିପରି ସେମାନେ ମୋ ହାତୁ
ଜଳାଞ୍ଜଳି ଗ୍ରହଣ
କରିବେ, ମୋ ମୁଖ ଦେଖନ୍ତେ
ନିଶ୍ଚେ ହେବେ ମଳିନ ।
ଲଜ୍ଜାନତ ମୁଖେ କିପରି
ତର୍ପଣାଦି କାଳରେ
ଆବାହିବି ପିତୃଗଣଙ୍କୁ
ପରାଜିତ ହସ୍ତରେ ।
କିମ୍ପାଇଁ ବା ଯିବି ଗଡ଼କୁ
ତାହା ମୁଖ ଦେଖିବି,
ନିବେଦି ତାହାକୁ ଏ ଦୁଃଖ
ସାଗରରୁ ତରିବି ।
ନ ପାଇବି ପ୍ରଭୁ ଦର୍ଶନ
ଗୋପୀନାଥଙ୍କ ସଙ୍ଗେ
ଶୁଣିବି କେମାଙ୍କ ବିଷାଦ
ପୁଣି କଥା ପ୍ରସଙ୍ଗେ ।
ଦାଣ୍ଡେ ଏ ନିର୍ଲଜ୍ଜ ବଦନ
ଦେଖାଇବି ତାହାକୁ,
କିପରି ବା ଅନ୍ତଃପୁରେ ମୁଁ
କ୍ଷମ ହେବି ଯିବାକୁ ?

ପ୍ରିୟା ମୁଖ ଗୃହି କପଟ
ଉଚ୍ଚାରିବ ବଚନ,
ମହାପାପ ଅପ୍ସହତ୍ୟା ବା
କରିବ କି ବରଣ ।
ତେଣୁ ଧ୍ୟାନସ୍ଥାନ ବେଶରେ
ଚିନ୍ତ ପଦ ଯୁଗଳ
ଶକ୍ରା କର, ଏହି ସ୍ଥାନରେ
ମରିବଇଁ କେବଳ ।
ଏହା ସ୍ଥିର କରି ଅତି ନୃ
ଧ୍ୟାନସ୍ଥାନ ଭାବରେ,
ପ୍ରାୟୋପବେଶନେ ବସିଲେ
କାଶ୍ୟପତ ସେଠାରେ ।
ଅଚେତନ ଦେଖି ନରେଶେ
ପ୍ରଭୁ ପାର୍ବତୀ ସୁତ,
ଦୟାପର ହୋଇ ସ୍ୱପନେ
ତାଙ୍କୁ କଲେ ବିଦିତ ।
"ଅହେ ନୃପ ! ତୁମ୍ଭେ ପ୍ରଭୁଙ୍କ
ପଦେ କରିଛ ଦ୍ରୋହ,
ଭୋଗୁଛ ତା ଫଳ ଏଠାରେ
ନାହିଁ ନାହିଁ ସନ୍ଦେହ ।
ଯାଇ ସେବ ତାଙ୍କ ଚରଣ
ଯୁଗ ଭକତ ଭାବେ.
ଗୁଣ୍ଡିଚ୍ଚ ଉତ୍ସବ ସମୟେ
ଦୟାମୟ ତାରିବେ ।"

ଶ୍ରୀଚୈତନ୍ୟ ହୋଇ ମନ୍ଦକ୍ଷୀ
ଲଭି ଅରଣ୍ୟେ ଥିଲେ,
ପ୍ରଭୁ କୃପା କ୍ରମେ ସେ ଭାଲେ
ସେନ୍ଧ ବାଟେ ଆସିଲେ ।
ଅଚେତନ ଦେଖି ନୃପଙ୍କ
ସିଞ୍ଚି ନୟନ ଜଳ,
ବାନ୍ଧି ବାନ୍ଧି ଡାକି ପଣ୍ଡିତେ
ଭଲେ କାନ୍ଦିତ ସ୍ଥିର ।
ଦେଖି ନୃପ ନିଜ ମନ୍ଦକ୍ଷୀ
ମୁଖ ନତ ବଦନ,
ହୋଇ, ପଡ଼ିଗଲେ ସେଠାରେ
ପୁଣି ହତ ଚେତନ ।
ବହୁକ୍ଷଣେ ପାଇ ଚେତନା
ତାଙ୍କ ଆଶ୍ୱାସନାରେ
ଜଣାଇଲେ ସ୍ୱପ୍ନ ବୃତ୍ତାନ୍ତ
ଅତି ଅସ୍ପଷ୍ଟ ଗିରେ ।
ମିଳ ବୁହେଁ ସେନ୍ଧ ସ୍ଥାନରୁ
ଚିନ୍ତି ପ୍ରଭୁଚରଣ,
ନୀଳାଦ୍ରିନାଥଙ୍କ ମନ୍ଦିରେ
ଯାଇ କଲେ ପ୍ରଣାମ ।
ଦେଖି ତାଙ୍କ ସୁସ୍ଥ ବେଶରେ
ନିଜ ଇଷ୍ଟ ଦେବଙ୍କୁ,
ଜଣାଇଲେ, "ପ୍ରଭୁ ଉଦ୍ଧାର
କର ଦାସଦାସୀଙ୍କୁ ।"

କାଷ୍ଠଦନ ଅନ୍ତେ ଗୃଣ୍ଡ୍ରଗୃ
ଯାତ ହେଲା ପ୍ରବେଶ,
ବିଜେ କଲେ ରଥେ ସୁଭଦ୍ରା
ରାମ ଶ୍ରୀଜଗନ୍ନାଥ ।
ସ୍ୱର୍ଣ୍ଣସମ୍ମାର୍ଜନୀ ହସ୍ତରେ
ନୃପ କରନ୍ତେ ଝାଡ଼ୁ,
ଅଲକ୍ଷିତେ ମନ୍ତ୍ରୀ ପ୍ରବେଶ
ହୋଇଗଲେ କୁଅଡ଼ୁ ।
ବୋଇଲେ, "ହେ କର୍ମ ଚଣ୍ଡାଳ !
ଦେଖି ତୋହର ଗୁଣ,
ଦେଉଅଛୁ ପଦ୍ମାବତୀଙ୍କ
କର କର ଗ୍ରହଣ ।
ଜନମ କରମ ଅଟନ୍ତି
ନିଜ ଜାତି କାରଣ,
ଜଗତେ ରହିଛି ଏହାର
ଭୂରି ଭୂରି ପ୍ରମାଣ ।
ଶୂଦ୍ର ତୁଲ୍ୟ ଥାଏ ଜନମେ
ବ୍ରାହ୍ମଣର ସନ୍ତାନ,
କରମେ ସେ ହୁଏ କ୍ରମରେ
ଦ୍ୱିଜ ବିପ୍ର ବ୍ରାହ୍ମଣ ।
ବିଶ୍ୱାମିତ୍ର କ୍ଷତ୍ର ଔରସେ
ଜନ୍ମି ପୁଣି ବ୍ରାହ୍ମଣ
ହୋଇଗଲେ, ତହିଁ କାରଣ
ଅଟଇ ନିଜ କରମ ।"

ଦେଖି ମନ୍ତ୍ରୀ ବୁଦ୍ଧିପାଟବ
ନୃପ ହେଲେ ନିର୍ବାକ,
ସମର୍ଥନ କଲେ ସେଠାରେ
ଥିଲେ ଯେତେକ ଲୋକ ।
ଏ ସମୟେ କାଞ୍ଚି ନୃପତି
ରଥ ପଥ ପ୍ରାନ୍ତରେ,
ଉପସ୍ଥିତ ହୋଇ କହିଲେ
ଅତି କୋମଳ ସ୍ୱରେ ।
ବିଜିତ କାଞ୍ଚୀଶ କାକୁତି
ଶୁଣ ଉତ୍କଳପତି !
ଚିର ଧନ ରତ୍ନ ତୁମ୍ଭର
ଯଶ କୀର୍ତ୍ତି ସୁଖ୍ୟାତି ।
ନ କରବି ଦାନ ଚଣ୍ଡାଳେ
କନ୍ୟା ରତନ କହି
ଯାଇଥିଲ, ଆଜ ପ୍ରଣତ
ହୋଇ ଦେଉଛି ମୁହିଁ ।
ଉତ୍କଳ ସମ୍ରାଟ ! କରୁଛି
ବାରମ୍ବାର ଜଣାଣ,
ଗ୍ରହଣ କରନ୍ତୁ ମୋହର
ଏହି କନ୍ୟା ରତନ ।
ଗଙ୍ଗାରୁ 'ପାଲାର'' ପର୍ଯ୍ୟନ୍ତ
ପ୍ରଜାଗଣ ଶରଣ ।
ଗ୍ରହଣ କରନ୍ତୁ ସାଦରେ
ମୋର କନ୍ୟା ରତନ ।

ଖଡ଼ଗର ଜୟ ନୁହଇ
ମହାରାଜ ! ଉଦୟ,
ଅବନତ ଶତ୍ରୁ ମୁଖରେ
ଜୟ ଧ୍ୱନି ବଜୟ ।
ଶୁଣି କାଞ୍ଚିପତି ବିନତି,
କ୍ଷମାଶୀଳ ଉତ୍କଳ-
ପତି କର ଧରି ରଥକୁ
ନେଲେ ତାଙ୍କୁ ସାଦର ।
ସସମ୍ମାନେ ପଦ୍ମାବତୀଙ୍କ
କଲେ ପାଣି ଗ୍ରହଣ,
ହୁଳହୁଳି ଦେଲେ ସେଠାରେ
ମିଳି ଲଳନାଗଣ ।
ଉତ୍କଳ ଗୌରବ ଗୀତିକା
ମିଳି ନର୍ତ୍ତକୀଗଣ,
ନାଚି ଅଭିନୟ ସହିତେ
ନୃତେ କଲେ ଗାୟନ ।
"ଜୟ ଜଗନ୍ନାଥ ସବଳ-
ଦେବ ଶ୍ରୀପଦ ତବ,
ବଢ଼ାଇ ଦେଇଛନ୍ତି କେବଳ
ଉତ୍କଳର ଗୌରବ ।
ଏହାପର ସଦା ସେ ହେଉ
ବିଜୟର ଭଜନ,
ବଢ଼ୁ ତାର ଯଶ କୀରତି
ଖ୍ୟାତି ମାନ ସମ୍ମାନ ।

ଜୟ ଜୟ ଜୟ ଉତ୍କଳ
ତୋର ସର୍ବସ୍ୱ ଜୟ,
ତୋ ବଡ଼ ଦେଉଳ ପତାକା
ଜୟ ଲକ୍ଷ୍ମୀ ନିଳୟ ।
ଜୟ ଜୟ ଜୟ ଉତ୍କଳ
ଯଶ ଭାରତ ଧାମ,
ଉତ୍କଳ ଭାରତ କେତନ
ଜୟ ପୁରୁଷୋତ୍ତମ ।
ଜୟ ଜୟ ଜୟ ଉତ୍କଳ
ନୁହେଁ ଅଙ୍କ କେବଳ,
ବିଜୟ ଉଲ୍ଲାସେ ମାତିବା
ଚିର ଅଭ୍ୟାସ ତୋର ।

---

ମୁଦ୍ରାକର — ବ୍ରଜବନ୍ଧୁ ନନ୍ଦ, ନବଭାରତ ପ୍ରେସ, କଟକ-୨